# କାଳ ଜ୍ୟୋତ୍ସ୍ନା

—ନାଟକ—

ଡାକ୍ତର ବସନ୍ତକୁମାର ମହାପାତ୍ର ଏମ୍. ବି., ବି. ଏସ୍.

ସାଥୀ ପ୍ରକାଶନ
ଓଡ଼ିଆବଜାର, କଟକ ୧



ଦ୍ୱିତୀୟ ସଂସ୍କରଣ : ୧୯୮୨

ମୁଦ୍ରଣ :
ରଙ୍ଗ ପ୍ରିଣ୍ଟର୍ସ
କଟକ-୮

ମୂଲ୍ୟ : ଛଅଟଙ୍କା ପଚିଶ ପଇସା ମାତ୍ର

# ଉତ୍ସର୍ଗ

ଯେତେବେଳେ ମୋ ଲେଖନୀ ଅଟକିଯାଏ,
ଜୀବନ ଜଞ୍ଜାଳ ଭିତରେ ମନ ଅବଶ ହୁଏ,
ସେତେବେଳେ
ଯାହାର ଲେଖନୀ ମୋତେ
ଆଗେଇଯିବାର ପ୍ରେରଣା ଦିଏ,
ଓଡ଼ିଶାର ସେଇ ଅପ୍ରତିଦ୍ୱନ୍ଦୀ ନାଟ୍ୟକାର
ଓ ମୋର ଶୁଭକାଙ୍କ୍ଷୀ
**ଶ୍ରୀଯୁକ୍ତ ମନୋରଞ୍ଜନ ଦାସଙ୍କୁ···**

—ନାଟ୍ୟକାର

## ଆପଣମାନଙ୍କ ପାଇଁ ଅବାନ୍ତର ଦ'ଧାଡ଼ି……

ଭଦ୍ରକ ସହର । ପୁରୁଣା ବଜାର । ନାରାୟଣଚନ୍ଦ୍ର ହା: ଇ: ସ୍କୁଲ । ହଁ, ସେଇଠି ସେଇ ସ୍କୁଲରେ ପଢ଼ିଲାବେଳୁ ଲେଖା ଆରମ୍ଭ କରିଥିଲି । ସେତେବେଳେ ନାଟକ ଲେଖା ଥିଲା ପିଲାଖେଳ । ଆଜି କିନ୍ତୁ କଲମ ଧରିଲାବେଳକୁ ମନରେ କେତେ ଚିନ୍ତା ଛୁଉଁଛି…କେତେ ଆଶଙ୍କା ଘାରୁଛି । ପ୍ରତି ମୁହୂର୍ତ୍ତରେ ଭାବୁଛି, ଏଥର ଲେଖାଟା କ'ଣ ଭଲ ହବ ? ସତରେ କଣ ମୋ ଲେଖନୀକୁ ଶୃଙ୍ଖଳିତ କରିଥିବା ଅନନ୍ତ ଦର୍ଶକଙ୍କ ମୁହଁରେ ଏହା ହସ ଫୁଟେଇପାରିବ ? ସତରେ କଣ ସମାଲୋଚକମାନଙ୍କର ସନ୍ଧାନୀ ଆଖିରେ ଏହା ଉତ୍ତରି ଯାଇ ପାରିବ ?

ଏଇ ଦ୍ୱିଧା ଭିତରେ ନାଟକ ମଞ୍ଚସ୍ଥ ହୁଏ, ଆଉ ନାଟକ ଶେଷରେ ମୁଁ ପାଏ ଦର୍ଶକମାନଙ୍କର କରତାଳି, ବନ୍ଧୁମାନଙ୍କର କରମର୍ଦ୍ଦନ, ସମାଲୋଚକମାନଙ୍କର ଶୁଭେଚ୍ଛା ।

ଇମିତି ଲେଖୁ ଲେଖୁ ଏକଦା ମୋର ସୌଖିନ ଧୂଳି-ଖେଳ ଆଜି ହୋଇଛି ମୋ ଜୀବନର ଏକାନ୍ତ ପ୍ରୟୋଜନୀୟ ଅଧ୍ୟାୟ ।

ଆଜି ଯଦି କେହି ମୋତେ ଲେଖନୀର ପ୍ରେରଣା ନେଇ ପଚାରେ, ତେବେ ମୁଁ କହିବି, ସେଇ କରତାଳି, କରମର୍ଦ୍ଦନ ଓ ଶୁଭେଚ୍ଛା ହିଁ ମୋର ସବୁ କିଛି ।

ସାଂସାରିକ ଜୀବନର ଜଞ୍ଜାଳ, ଡାକ୍ତରୀ ଜୀବନର ଜୀବନମରଣର ଦାୟିତ୍ୱ…!!! ତା'ରି ଭିତରେ ଯେତେବେଳେ ମନଟା ଖଣ୍ଡ ଖଣ୍ଡ ହୋଇଯାଏ, ସେତେବେଳେ ଅକ୍ଷୟ ଆସେ, ଓଡ଼ିଶାର ବେତାର, ମଞ୍ଚ ଓ ଚିତ୍ର ଜଗତର ସୁପରିଚିତ ଶିଳ୍ପୀ ଓ ନିର୍ଦ୍ଦେଶକ ଅକ୍ଷୟ ମହାନ୍ତି ।

ସତରେ ଅକ୍ଷୟ ମୋତେ 'କ୍ଷୟ' ହବାକୁ ଦିଏ ନାହିଁ । ତାଆରି କଥାରେ କଲମ ଧରେ । ରାତି ଜାଗେ । ଲେଖା କୋଉଦିନ ଶେଷ ହୁଏ ଜାଣିପାରେନା ।

ସେଇ ଅକ୍ଷୟ କଥାରେ 'କାଳ କେମ୍ପାସ୍ନା' ଲେଖା । ତାଆରି ନିର୍ଦ୍ଦେଶରେ ମଞ୍ଚସ୍ଥ ହୋଇଥିଲା ଓଡ଼ିଶା କଲ୍‌ଚରାଲ୍ ଏସୋସିଏସନ ଆନୁକୂଲ୍ୟରେ ଭୁବନେଶ୍ୱର

ରବୀନ୍ଦ୍ର ମଣ୍ଡପର ନାଟକ ଉତ୍ସବରେ । ଓଡ଼ିଶାର ପ୍ରବୀଣ ନେତା ଓ ଅସାମାନ୍ୟ ସାହିତ୍ୟ ପ୍ରତିଭା ଡକ୍‌ଟର ମହତାବଙ୍କର ଅନୁପ୍ରେରଣା—ଅନୁଷ୍ଠାନଟି ପଛରେ । ନୂତନତ୍ୱ ଥିବା ସ୍ୱାଭାବିକ । ହଁ, କିଛିଟା ନୂତନ ରକ୍ତର ସଞ୍ଚାର ହେଲା । ଷ୍ଟାଣ୍ଡି ସଙ୍ଗୀତ ନାଟକ ଏକାଡ଼େମୀର କର୍ମକର୍ତ୍ତାମାନଙ୍କ ନିଦ ଭାଙ୍ଗିଲା ।

ନାଟକ ଉତ୍ସବର ସେହି ବିପୁଳ ସମାବେଶ ମଧ୍ୟରେ "କାଳ ଜ୍ୟୋତ୍ସ୍ନା" ଅଭିନୀତ ହେଲା ସଗୌରବେ । ସେ ଦିନ ସମାଲୋଚକମାନଙ୍କ ମୁହଁରେ ଯେତେ ପ୍ରଶଂସା ଶୁଣିଚି, ଆଜି ଭାବିଲେ ଦେହ ଶୀତେଇଉଠେ, ଆଖି ଛଳ ଛଳ ହେଇଯାଏ । ଏଇ ସମାଲୋଚକମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ବହୁ ବିଶିଷ୍ଟ ନାଟ୍ୟକାର, ସାହିତ୍ୟରଥୀ ଓ ଜନନେତାମାନେ । ମନେ ହେଲା, ଏକ ବିରାଟ ସାହିତ୍ୟର ଦରବାରରେ ମୋର ଏଇ ଅକିଞ୍ଚନ ନାଟକଟି ବିଜେତାର ଜୟମାଲ୍ୟ ଗ୍ରହଣ କରିବାର ଗୌରବ ଅର୍ଜନ କରିଚି ।

ଏଇ ନାଟକଟି ନେଇ ମୁଁ ଏକାନ୍ତ କୃତଜ୍ଞ ମେଡ଼ିକାଲ କଲେଜ ରଙ୍ଗମଞ୍ଚ ନିକଟରେ, ଯେଉଁଠି ମୋର ପ୍ରତିଟି ନାଟକ ପ୍ରଥମ ଅଗ୍ନିପରୀକ୍ଷା ଦେଇଥାଏ ; ଆଉ ପରେ ପେଷାଦାର ମଞ୍ଚର କର୍ମକର୍ତ୍ତାମାନେ ତାକୁ ସ୍ୱାଗତ କରିନେଇ ମୋତେ ଉତ୍ସାହିତ କରିଥାଆନ୍ତି । ବିଶେଷତଃ ଏଇ ନାଟକଟି ମେଡ଼ିକାଲ କଲେଜରେ ଅଭିନୀତ ହେଲାବେଳେ ତାକୁ ରୂପ ଦେବାରେ ଯେଉଁମାନେ ଅସାମାନ୍ୟ ପ୍ରତିଭାର ପରିଚୟ ଦେଇଥିଲେ, ସେମାନଙ୍କ ମଧ୍ୟରେ ଡାକ୍ତର ରଜନୀକାନ୍ତ ମହାନ୍ତି, ଡାକ୍ତର ହୃଦୟରଞ୍ଜନ ମହାନ୍ତି, ଡାକ୍ତର ଶୈଳେଶ୍ୱର ନନ୍ଦ, ଡାକ୍ତର ରମେଶ ରଥ ଓ ଶ୍ରୀମତୀ ଅଭିନେତ୍ରୀ ଡାକ୍ତର କୁମାରୀ ସୁହାସିନୀ ଜେନା ଅନ୍ୟତମ । ଏମାନଙ୍କ ନିକଟରେ ମୁଁ ଚିରଦିନ ଋଣୀ ।

ଆଉ ଋଣୀ ଆପଣମାନଙ୍କ ନିକଟରେ, ଯେଉଁମାନେ ଏ ନାଟକ ପଢ଼ିବେ, ଅଭିନୟ କରିବେ, ଆଉ କରିବେ ମୋ ଲେଖା ଆଉ ଲେଖନୀର ଆଲୋଚନା, ସମାଲୋଚନା ।

—ନାଟ୍ୟକାର

ଓଡ଼ିଶା କଲ୍‌ଚରାଲ୍ ଏସୋସିଏସନ ଆନୁକୂଲ୍ୟରେ ଅନୁଷ୍ଠିତ ନାଟକ ଉତ୍ସବରେ ସଗୌରବେ ସୁ-ସମ୍ମାନିତ ନାଟକ

## କାକ ଜ୍ୟୋତ୍ସ୍ନା

ପ୍ରଯୋଜନା—ଶ୍ରୀ ଭିକାରୀ ଚୌଧୁରୀ

ଅଂଶ ଗ୍ରହଣ :

### ସ୍ତ୍ରୀ

| | |
|---|---|
| ମଳୟା ଦେବୀ | ଅନ୍ନମା ସେଦନ |
| ଶିଖା | ବିଦ୍ୟୁତ୍‌ଲତା ପଟ୍ଟନାୟକ |
| ଅମୀନା | ରେଣୁକା କର |

### ପୁରୁଷ

| | |
|---|---|
| ସଞ୍ଜୟ | ଦେବ ଆଗ୍ରୁର୍ଷି |
| ସୁରଜିତ୍ | ବିଜୟ ମହାନ୍ତି |
| ଆବ୍‌ବାଜାନ୍ | ଶୈଳେଶ୍ୱର ନନ୍ଦ |
| ମେଘନାଦ | ରମେଶଚନ୍ଦ୍ର ମଲ୍ଲ |
| ପି. ଏ. | ବିଜୟ ଚକ୍ରବର୍ତ୍ତୀ |
| ଜୋତା ଦୋକାନି | ସାଗର ଦାସ |
| ରୂପସଜ୍ଜା | ଭରତି ଚନ୍ଦାଳୟ |
| ଆଲୋକ | ବିଜୟ ମହାନ୍ତି |

ସଙ୍ଗୀତ ପରିକଳ୍ପନା ଓ ନିର୍ଦ୍ଦେଶ } **ଅକ୍ଷୟକୁମାର ମହାନ୍ତି**

କାହାଣୀ ଓ ସଂଳାପ—ଡା: **ବସନ୍ତକୁମାର ମହାପାତ୍ର**

"କାକ ଜ୍ୟୋତ୍ସ୍ନା"

—ପାତ୍ର ପରିଚୟ—

| | |
|---|---|
| ମଳୟା ଦେବୀ | ପ୍ରୌଢ଼ା ନାୟିକର, ସମାଜସେବିକା, ଡେପୁଟି ସେକ୍ରେଟେରୀଙ୍କ ଅତ୍ୟାଧୁନିକା ପତ୍ନୀ |
| ଶିଖା | ମଳୟା ଦେବୀଙ୍କ ଚରିତ୍ରର ଠିକ୍ ଓଲଟା, କଲେଜପଢ଼ା ତାଙ୍କର କନ୍ୟା |
| ଅମୀନା | କୁଲିବସ୍ତିର ସରଳ ବୃଦ୍ଧ ମୁସଲମାନ, ଆବ୍‌ବାଜାନ୍‌ର ସୁବତୀ କନ୍ୟା |
| ସଞ୍ଜୟ | ପ୍ରଗତିଶୀଳ ଓ ଉଦୀୟମାନ ଲେଖକ, ଯାହା ଲେଖାରେ ଅଗ୍ନିବୀଣାର ମନ୍ତ୍ର |
| ସୁରଜିତ୍ | ତରୁଣ ସମାଜସେବୀ, ଶିଳ୍ପପତି |
| ଆବ୍‌ବାଜାନ୍ | ବୃଦ୍ଧ ମୁସଲମାନ, କୁଲିବସ୍ତିର ଲୋକ |
| ମେଘନାଦ | "ଶିଳ୍ପୀ" ପତ୍ରିକାର ପ୍ରତିନିଧି, ଅତ୍ୟାଧୁନିକ ଓ ବାକ୍‌ପଟୁ ଯୁବକ |
| ପି. ଏ. | ସୁରଜିତ୍ ପଛରେ ଦୁର୍ନୀତି ନିବାରଣ ବିଭାଗର ଛଦ୍ମ ଗୋଇନ୍ଦା । |

—✻—

ସୁ ପ୍ରାହ୍ହଛ୍ୟଙ୍କ

## ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତଙ୍କ ଆଖିରେ

## "କାକ-ଜ୍ୟୋତ୍ସ୍ନା"

ଶ୍ରୀ ବସନ୍ତକୁମାର ମହାପାତ୍ରଙ୍କ ନାଟକ 'କାକ-ଜ୍ୟୋତ୍ସ୍ନା' ଭୁବନେଶ୍ୱରରେ ଅଭିନୀତ ହେଲାବେଳେ ମୁଁ ସେ ଅଭିନୟ ଉପଭୋଗ କରିବାର ସୁଯୋଗ ପାଇଥିଲି । ତା ଉପରୁ ବହିଟି ପଢ଼ିଛି । କ୍ଲାନ୍ତ ଓ କଷ୍ଟାଳ ଭିତରେ ଟିକିଏ ହେଲ କରି କେହି ଯିବ ଥିଏଟର ଦେଖି, ମୁଣ୍ଡ ଟିକିଏ ହାଲୁକା ଲାଗିବ ବୋଲି । ହୁଏତ ସେ ସାଧାରଣଙ୍କ ଭିତରୁ ଜଣେ, ଦେଶର ଚଉଦପଣ ଦେମିତ । ସେ ଖଟେ, ରୋଜଗାର କରେ, ଟାଣିଟୁଣି ସହି ଦିନ କାଟେ । ସେ ସବୁ ଖୋଜୁଥିବ ଯେ ଧନବନ୍ତ, ବିଳାସ ଆଡ଼ମ୍ବର ଭିତରେ ବୁଡ଼ିରହିଥିବା ଦାମ୍ଭିକ ମିଲ୍‌ମାଲିକ ପୁଣି ଖବରକାଗଜ ମାଲିକ ତୁଳସୀପୁରର ସୁରଜିତ୍ ଚୌଧୁରୀର ସବୁ ଯୋଜନା ଭୁଷୁଡ଼ିପଡ଼ୁ, ତା ମିଲ୍‌ରେ ଶ୍ରମିକମାନେ ଗଣ୍ଡଗୋଳ କରନ୍ତୁ, ସରକାରୀ ନ୍ୟାୟାଧିକରଣ ସେହି ଶ୍ରମିକମାନଙ୍କ ସପକ୍ଷରେ ରାୟ ଦେଉ, ବ୍ୟବସାୟରେ ତା ସରିକ୍‌ଦାର୍‌ମାନେ ତାକୁ ଏକଘରକିଆ କରନ୍ତୁ, ସରକାର ତାଙ୍କ ସାହାଯ୍ୟ ଟଙ୍କା ତା ବେପାରରୁ ଉଠାଇନଅନ୍ତୁ, ତା ଉପରେ ହାଡ଼ଭଙ୍ଗା ଆୟକର ପଡୁ, ତାକୁ ବ୍ଲାକ୍‌ମେଲେନ୍ ଧରୁ ଓ ତାର ବିଶ୍ୱସ୍ତ 'ପି. ଏ.' ନିଜ ଛଦ୍ମବେଶ ଖୋଲିପକାଇ ଉଭା ହେଉ ପୁଲିସ୍ ହାକିମ ରୂପରେ, ତାକୁ ଗିରଫ କରୁ ବା ତା ଘରେ ଅଟକ କରୁ,—ପଦେ କଥାରେ, ସେହି ସାଧାରଣ ଦର୍ଶକ ସବୁ ଖୋଜୁଥିବ ଯେ ସୁରଜିତ୍ ଚୌଧୁରୀ ଧ୍ୱଂସ ହେଉ, ତେବେ ତା ଦେଖିପାରିବ ରଙ୍ଗମଞ୍ଚ ଉପରେ ମୋଟେ ଦୁଇଘଣ୍ଟା ଅଭିନୟ କାଳ ମଧ୍ୟରେ । ସେ ଦର୍ଶକ ପକ୍ଷରେ ସେ ଅନୁଭୂତ ହେବ ସେହିପରି, ଯେପରି,—"ସ୍ୱପ୍ନେ ମନ ଲୋଡ଼ୁଥାଇ ଯାହା, କାଳେ ପ୍ରାପତ ହୋଇ ତାହା", ସାମ୍ନାରେ ସତେ କି ଅଭିନାଖିଶ୍ୱର, ସେହି ସ୍ୱପ୍ନ, ସେହି ପୁଣି ସତ୍ୟ ।

'ସାଧାରଣ ଦର୍ଶକ'—ସେ ସେହି ଯୁଗ ଯୁଗର 'ସାଧାରଣ ମଣିଷ'—ଚାଗିଯାଇଛି; ଅନୁଭବ କରିଛି ଯେ ଏଇ ସୁରଜିତ ଚୌଧୁରୀମାନେ ତାକୁ କରିଛନ୍ତି ଆପଣା ପରୀକ୍ଷା-ବିଜ୍ଞାନର ଜିଅନ୍ତା ସାମଗ୍ରୀ, ଗିନି-ପିଗ୍ ମୂଷା । ତା ସହାନୁଭୂତ ସହଜେ

ଛକାପଡ଼ୁଛି 'କୁଳବଧୂର କବିତା' ବହି ଲେଖାଳି ସଞ୍ଜୟ ଅଡ଼ିକା । ସେଇ ତ ସେ ବହୁତ, ନିଃସ୍ୱ, ଅଥଚ ବିଦ୍ରୋହୀ କବି । ତା କଲମ ମୁନରେ ଅଛି ନିଆଁ । ସାଧାରଣ ଦର୍ଶକଙ୍କୁ ଭାବିବାକୁ ଭଲ ଲାଗୁଥିବ ଯେ ସୁରକ୍ଷିତମାନେ ସେ ନିଆଁକୁ ଡରନ୍ତି । ତେଣୁ କବିଙ୍କୁ ବନ୍ଦୀ କରାଯାଇଛି, ଗୋଟିଏ ଅଭିନବ ଉପାୟରେ । ସୁରକ୍ଷିତ ତାକୁ ଆଣି ରଖିଛି ତା ଇନ୍ଦ୍ରଭୁବନରେ, ତୁଳସୀପୁର କୋଠରେ ; ପ୍ରାଚୁର୍ଯ୍ୟରେ ବୁଡ଼ାଇଦେଇଛି, ତାକୁ ଖଟିବାକୁ ଖଞ୍ଜିଦେଇଛି ଚାକର, ଡାକ୍ତର, ସଙ୍ଗିନୀ, ପି. ଏ., ଦରଜି, କୋଚୁଆନ, କେତେ ଲୋକ । ଶୁଆର କଣ୍ଠ ପଡ଼ିଛି । ଆଉ ତା ମୁନିଆଁ ଅଣ୍ଟାରୁ ବାହାରୁନାହିଁ ଛୁଇଁକଲା କବିତା । ତା ଅଟିତେ ମୋହନ ଅନପୋଟଳା । ତା ପ୍ରିୟ କୁଳବଧୂ କଳାଯାଉଥିବା ଠୋଠା ତାକୁ ଶୁଭୁଛି, ଟରପଗଡ଼, ଗୁଜା ଫଏର, ସବୁ ଖବର ସେ ପାଉଛି । ଆଣି ଦେଉଛି ତା 'କାହ୍ନୁଆଁ' ବନ୍ଧୁ ବିରୂପାକ୍ଷ । ପାଇପ୍ ବାଟେ ଚର୍ଚ୍ଚି ଆସେ । କିନ୍ତୁ ସେ ବିରୂପାକ୍ଷଙ୍କୁ ଦିନେ ଆଜ୍ଞା ଦେଇପାରିଲା ନାହିଁ, ମନା କଲା । ବୁଢ଼ା ଆବ୍‌ବାଜାନ୍, ଯେ ତାକୁ ପ୍ରାୟ ଅନୁଷ୍ଠାନରୁ ପାଳିଥିଲା, ତାକୁ ଓ ତା ଝିଅ ଅମୀନାକୁ ଟିକିଏ ଜାଗା ଦେଲା ନାହିଁ । 'ଶିଖା' ଦେବୀଙ୍କ ପ୍ରେମ ନିବେଦନ କଲା, କବିପଣ ଯାଇ ଅମଣିଷପଣ ଓ ତା ତଳକୁ,—ମେରୁଦଣ୍ଡବିହୀନ କୃମିକୀଟପଣ ଡାଳି ପ୍ରକାଶ ପାଇଲା । 'ସାଧାରଣ ଦର୍ଶକ' ଦେଖୁଛି, ସେ କ୍ଷୁବ୍ଧ, ମର୍ମାହତ, ଉଦ୍‌ବେଳିତ ହେଉଛି । ସେହି କବି ଯେପରି ତାହାର କ୍ଷୀଣ ଆଶା ଉତ୍ସାହର ପତାକା ହୋଇଥିଲା, ଏବେ ହେଲା ତାହାର ସ୍ଖଳନ ଓ ନୈରାଶ୍ୟର ।

କିନ୍ତୁ ରଗିବାପାଇଁ ତା ବି ଉପାଦାନ ହୋଇଯାଉଛି । ଏଇ ସ୍ଖଳନ ପାଇଁ, ଆଦର୍ଶର ମୃତ୍ୟୁ ପାଇଁ ଦାୟୀ କିଏ ? ସେଥିପାଇଁ ବି ଦାୟୀ ସୁରକ୍ଷିତ ଚୌଧୁରୀ, ପୁଞ୍ଜିବାଦୀ ବର୍ଗର ଅଂଗୁରର ପ୍ରତୀକ । ସେ ମଣିଷକୁ ସ୍ନେହରେ କିଣିଏ ଗ୍ରାସ କରିବା-ପାଇଁ, କବିକୁ ପ୍ରାଚୁର୍ଯ୍ୟ, ପବ୍ଲିସିଟିର ଢକୋଚ ଦିଏ ଆପଣା ଖବରକାଗଜର ଏଡିଟର କରି ରଖିବାକୁ, ଆପଣା ଶତ୍ରୁଙ୍କ ଉପରେ ଦାଉ ସାଧିବାକୁ ବରକନ୍ଦାଜ ପରି, ଆପଣା ପବ୍ଲିକ ଜଗତ ଆଗରେ ବଖାଣିବାକୁ ଭାଟ ପରି, ସବୁ ଦୋଷ ତାହାର !

ସବୁ ସରିଥିଲା, ହଠାତ୍ କବି ଅଣ୍ଟାଭିଡ଼ି ଆଖି ତରାଟି ଠିଆ ହେଲା ; ଚିହ୍ନି ଦେଲେ ଶିଖା ଦେବୀ । ତାଙ୍କଠୁ ସାହସ ପାଇ ସେ ସୁରକ୍ଷିତର ମୁହାଁମୁହିଁ ହୋଇ

ଝପଟ ଝାଣ ଝାଣ ବଜାଇଦେଇ ଯାଣ୍ଡୁଦୁଆର ବାଟେ ବାହାର ‘ଗୁଲଗଲ୍ କୁଲ୍‌ନାଟ୍ରିକ୍’ । ଏଥର ସେ କବିତା ଲେଖିବ । ‘ସାଧାରଣ ଦର୍ଶକ’ ତା ଚଡ଼କଣର ଓଲଟପାଲଟରୁ ଦୁନିଆରେ ବୋଧହୁଏ ଏଭଳି ‘ହଠାତ୍ ପରିବର୍ତ୍ତନ’ ଘଟିବ ବୋଲି ସ୍ୱପ୍ନ ଦେଖେ, ମୋ ଖୁସି ହେଲା । କବିତା ବିଷୟରେ ତା ଆଗରେ ଦୃଢ଼ ମତ ଅଣି ଥୁଆ ହୋଇଛି । ସେ ଫର୍ମାସି ଅନୁସାରେ ସୃଷ୍ଟି କରିହୁଏ ନାହିଁ । ପ୍ରଭୁର ବଳରେ ହୁଏ ନାହିଁ । ସେଭଳି ଉଦ୍ୟମର ଉଦାହରଣ ଶିଖାର ବୋଉ ମଳୟା ଦେବୀ, ଢିପଦାସର ପାଟ । ‘ସୌଖିନ ସାହିତ୍ୟ’ ସାହିତ୍ୟହିଁ ନୁହେଁ ।

କିନ୍ତୁ, ମନରେ ଗୋଟିଏ ବଗୁର ଉଏଁ । ‘ସୌଖିନ ସାହିତ୍ୟ’ର କୌଣସି ନିର୍ଦ୍ଦିଷ୍ଟ ରୂପ ନାହିଁ । ତକିଆରେ ଆଉଜି ବସି ଅଳସେଇ ଅଳସେଇ ଭଅଁରେ ବେଢ଼ିଥିବା ଚନ୍ଦ୍ରମୁଖିକୁ ବାରମ୍ବାର ମନେ ପକାଇଲା ଭଳି ସାହିତ୍ୟ ଗୋଟାଏ ପ୍ରକାରର ‘ସୌଖିନ ସାହିତ୍ୟ’ ହୋଇପାରେ, ଯେମିତି—ଆଗରୁ ଖବରକାଗଜରେ ପଢ଼ିଥିବା, ମାଇକ୍‌ରେ ଶୁଣିଥିବା କେତେଗୁଡ଼ିଏ ବନ୍ଧା ଧାରଣାରେ ଗୋଡ଼ ଯୋଡ଼ି ଗୁନ୍ଥିଦେବା ବି ‘ସୌଖିନ ସାହିତ୍ୟ’ ହୋଇପାରେ । କଥଟି ପ୍ରଶ୍ନ ଗୋଟିଏ, ଏଠି ସାହିତ୍ୟିକ ସତ୍ୟ-ଶିବ-ସୁନ୍ଦରଙ୍କ ଆରାଧକ ନା ତାତ୍କାଳିକ ସମସ୍ୟାର ?

ନାଟ୍ୟକାର ଡାକ୍ତର ଶ୍ରୀ ବସନ୍ତକୁମାର ମହାପାତ୍ର ଉତ୍ସାହୀ ସୂଚକ । ଏ କୃତିଟି ଆମୋଦଦାୟକ । ଏଥିପାଇଁ ସେ ବହୁତ ଭାବିଛନ୍ତି, ଖଟିଛନ୍ତି, ତାଙ୍କର ନିଷ୍ଠା ଓ ଆନ୍ତରିକତା ଏଥିରେ ବାରିହୋଇପଡ଼ୁଛି । କେତେ ସ୍ଥାନରେ କଥୋପକଥନ ଭାବଗର୍ଭକ ଓ ଚରିତ୍ରକର୍ଷକ ହୋଇଛି । ତାଙ୍କର ମୁଖ୍ୟ ପାତ୍ର କବି ସନ୍ତୋଷ କେବଳ ଦୟନୀୟ ହୋଇଛି । କିନ୍ତୁ ଦୃଷ୍ଟି ଆକର୍ଷଣ କରନ୍ତି କାନ୍ଥୁଡ଼ିଆଁ ବିରୂପାକ୍ଷ, ବୁଢ଼ା ଆବ୍‌ବାଜାନ୍ ମିଆଁ । ସଂଳାପର ଭାଷା ସ୍ୱାଭାବିକ, କିନ୍ତୁ କେତେଠି ବଙ୍ଗଳା-ପ୍ରୟୋଗ ଦିଶୁଛି, ନ ରହିବା ହିଁ କାମ୍ୟ, ଯଥା—‘ରାତ ଜାଗେ’ ‘ପ୍ରଭୃତି’, ‘ଜିନ୍ଷଟା’ ‘ପାଇଁ’ ଅର୍ଥରେ ‘ନେଇ’ ‘ବହୁରୂପୀ ସଜେଇ’, ‘ଆଜେବାଜେ’, ‘ଦିନ ଘଣ୍ଟା ଧରି କହୁଚି’, ‘କି ଯେ କଷ୍ଟ’, ‘ଭେଜାଲ୍’. ‘ଦରଦ,’ ‘ଏଇତ ବେଦନ’, ‘ବନ୍ଦକର’ (ମାନେ, ‘ତୁନି ହ’); ଇତ୍ୟାଦି । ତେବେ, ଏଥିଲାଗି ଅବା ମନ ଉଣା କାହିଁକି ? ‘ସବୁଜ’ ଅମଳରୁ ଓଡ଼ିଆ ସାହିତ୍ୟର ହାଣ୍ଡିଶାଳର ଦ୍ୱାରପଟ ଆଗୁଳ ଫିଟିଗଲାଣି ; ରେଡିଓରୁ

ବା ଶବ୍ଦରେ ଯେଉଁ ପ୍ରୟୋଗ, ଦେଖିଯାଏ କେତେ ନାମଜାଦା ଲେଖକଙ୍କ ରଚନାରେ । "ଆଚମ୍ବିତା" "ହତଭମ୍ବ" ହୋଇ ଲାଭ ନାହିଁ । ସେମିତି, ବଙ୍ଗଳାପରେ ସ୍ଥାନେ ସ୍ଥାନେ ଇଂରେଜି ଶବ୍ଦ ଫଟ୍‌ଫଟାଣି । ତେବେ, ଯୁବକଯୁବତୀମାନେ ଯେମିତି କହୁଛନ୍ତି ସତ, ବଙ୍ଗଳା ନାଟକମାନଙ୍କରେ ବି ବହୁକାଳୁ ସେସବୁ ଚଳିଲାଣି । ତାକୁ ଦେଖି ଲେଖକଙ୍କର ଧାରଣା ହୋଇଥିବ ଯେ ଲୋକେ ଯାହା କହନ୍ତି, ଅର୍ଥାତ୍ ଇଂରେଜିମିଶା ବଙ୍ଗଳାପ୍ରୟୋଗମିଶା ଉପକୂଳବର୍ତ୍ତୀ ଓଡ଼ିଆ ; ସେ ଭାଷାକୁ ସେମିତି ଲେଖିବା ଉଚିତ । କିନ୍ତୁ ଭାଷାର ଅଳିଆ ଓଳେଇବା ବି ସାହିତ୍ୟିକଙ୍କ କର୍ତ୍ତବ୍ୟ ଭିତରୁ ଗୋଟିଏ ···ପ୍ରବୃତ୍ତି ସବୁବେଳେ ମଇଳା ସେମେଣ୍ଟା ଗନ୍ଧିଆ ପୋଚକାକୁ ନିକାଲି ସଜ ପବନ ମଜ ଅଲୁଅ ପଶିବ ବୋଲି ବାଟ ଖୋଲିଦେବା, ଆଉ ସୃଷ୍ଟି କରିଯିବା କିଅନ୍ତା. ଶାଗୁଆ, ଛନ୍‌ଛନିଆ ।

ତରୁଣ ଲେଖକଙ୍କ ପ୍ରତିଭାର ବିକାଶ କାମନା କରୁଛି ।

ଭୁବନେଶ୍ୱର
ତା ୧୭ । ୬ । ୭୮

ଗୋପୀନାଥ ମହାନ୍ତି

ସାଧାରଣ ଦର୍ଶକ—ସେ ସେହି ଯୁଗଯୁଗର ସାଧାରଣ ମଣିଷ, ନାଟକ ଦେଖୁ ଦେଖୁ ସେ ରାଗିଯାଇଚି । ଅନୁଭବ କରିଚି, ଏଇ ସୁରକ୍ଷିତ୍ ଚୌଧୁରୀମାନେ ତାକୁ କରିଚନ୍ତି ଅପଣା ପରୀକ୍ଷା ବିଜ୍ଞାନର କ୍ରିଅନ୍ତା ସାମଗ୍ରୀ ; ମୂଷା, ଗିନିପିଗ୍ !!! ତା' ସହାନୁଭୂତି ସହଜେ ଢଳିପଡ଼ୁଚି ନାଟକର ନାୟକ ସନ୍ତୋଷ ଆଡ଼କୁ ।

ଲେଖକଙ୍କର ଏଇ କୃତିଟି ଆମୋଦଦାୟକ । ସେ ବହୁତ ଭାବିଛନ୍ତି, ଖଟିଛନ୍ତି । ତାଙ୍କର ନିଷ୍ଠା ଓ ଆନ୍ତରିକତା ହିଁ ଏଥିରେ ବାରିହୋଇପଡ଼ୁଛି । କଥୋପକଥନ ଭାବଗର୍ଭିକ, ଚରିତ୍ରାକର୍ଷକ ଓ ସଂଳାପର ଭାଷା ସ୍ୱାଭାବିକ ।

ତରୁଣ ଲେଖକଙ୍କର ପ୍ରତିଭାର ବିକାଶ କାମନା କରୁଛୁ ।

ଗୋପୀନାଥ ମହାନ୍ତି



# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଶିକ୍ଷିତ, ସୁଶ୍ରୀ, ସମାଜସେବୀ, ଶିଳ୍ପପତି ଯୁବକ ସୁରଜିତ ଚୌଧୁରୀଙ୍କର ତୁଳସୀପୁର କୋଠୀର ଏକ ସୁସଜ୍ଜିତ କକ୍ଷ । ବଡ଼ ଖୋଲା ଝରକା ଦେଇ ଦେଖାଯାଏ ଆକାଶ ଆଉ ଦୂରରେ ମିଲ୍ ର ଚିମନୀଗୁଡ଼ିକ । ସମୟ ସକାଳ । ରେଡିଓରେ ବାଜୁଥିଲା ମାଙ୍ଗଳିକ । ବିଛଣା ଉପରେ ଅଳସେଇ ଶୋଇ ଖୁବ୍ ମନୋନିବେଶ କରି ଲେଖିବାକୁ ଚେଷ୍ଟା କରୁଥିଲା ସଞ୍ଜୟ । ଛିଣ୍ଡା କାଗଜରେ ଘରଟି ପୂର୍ଣ୍ଣ ଦିଶୁଥାଏ । କେତେକ କାଗଜ ଓ ଖୋଲା କଲମ ଧରି ଭାବି ଚାଲିଥାଏ ସଞ୍ଜୟ । ବାମପଟରେ ଦ୍ୱାର ଦେଇ ପଶିଆସିଲେ ସୁରଜିତ୍ ଚୌଧୁରୀଙ୍କ ପି. ଏ. । ତାଙ୍କ ହାତରେ ଗୋଟାଏ flat file. ଘରଟିରେ ଥିଲା ସୋଫା, ବୁକ୍‌ସେଲ୍‌ଫ୍, ରେଡିଓ, ବଡ଼ ବଡ଼ ଝରକାର ପରଦା, ୩ଟି ଦୁଆର ଆଉ ସ୍କ୍ରୀନ୍, ଫୁଲକୁଣ୍ଡ, ବଡ଼ିଆ ଛବି, ଓ୍ୱାଲ୍ ଲାଇଟ୍, ଟେବୁଲ୍‌ଲାଇଟ, କେତେକ ମ୍ୟାଗାଜିନ୍ । ସବୁକିଛିରେ ଅତ୍ୟାଧୁନିକତାର ରୁଚି ସୁସ୍ପଷ୍ଟ । ଇଙ୍ଗିତ କି ଅଶ୍ରୁସ୍ୱର ପଶ୍ଚାଦ୍ପଟରେ ମଧ୍ୟ ]

ପି. ଏ.—Good morning, ସାର୍ ! ଏ ହେଲା ଆପଣଙ୍କର ଆଜି ଦିନର engagement: ସକାଳ ୭ଟାରେ breakfast, ୮ଟାରେ review of newspapers, ୯ଟାରେ ଇଣ୍ଟରଭ୍ୟୁ ଉଇଥ ଏଡିଟର, ପ୍ରଗତି ସାହିତ୍ୟ ପରିଷଦ । ଦିନ ୧୨ଟାରେ ଲଞ୍ଚ, ପୁଣି ୪-୩୦ରେ park କମ୍ପା ନଛିକ୍ଲବ, ସନ୍ଧ୍ୟା ୭ରେ party, ରାତି ୯ରେ କ୍ଲବ ଆଉ ତା'ପରେ ଡିନର । ଏଇ ହେଲା ଆଜି ଦିନର ପ୍ରୋଗ୍ରାମ୍ । କିଛି addition alteration ଚାହାନ୍ତି ତ···

ସନ୍ତୋଷ—(ପି.ଏ.ଙ୍କ ହାତରୁ ଫାଇଲଟା ନେଇ) ଗୋଟାଏ ସର୍କସର ପ୍ରୋଗ୍ରାମ ହୋଇଥିଲେ ଖୁବ୍ ଭଲ ହୋଇଥାନ୍ତା । ( ଫାଇଲଟା ବଢ଼େଇଦେଲା )

ପି. ଏ.—ସର୍କସ ? ? ? କିନ୍ତୁ ସର୍କସ ତ ବର୍ତ୍ତମାନ କିଛି ନାହିଁ । ଯଦି କହିବେ, ସିନେମା କମ୍ପା ଥିଏଟର···

ସନ୍ତୋଷ—ନା, ଚଳିବନି । ମୁଁ ଚାହେଁ କିଛି ଗୋଟାଏ active entertainment, ଯେମିତି ମନେ କରନ୍ତୁ ଭାଲୁନାଚ, ଘୋଡ଼ାଦଉଡ଼, ନ ହେଲେ ମାଙ୍କଡ଼ନାଚ···

ପି. ଏ.—ମାଙ୍କଡ଼ନାଚ ? ଯୋଗାଡ଼ କରିବାକୁ ତ ପୁଣି ସମୟ ଲାଗିବ ! ଆପଣ ଯଦି ଚାହାନ୍ତି, ତେବେ ଚେଷ୍ଟା କରିବି ।

ସନ୍ତୋଷ—ଚେଷ୍ଟା କରିବେ ନୁହେଁ, କରନ୍ତୁ । ଆଜି । ଆସନ୍ତୁ !

ପି. ଏ.—( ଫାଇଲ ନେଇ ଚାଲିଗଲେ )

ସନ୍ତୋଷ—( ପୁଣି ଲେଖିବା ଆରମ୍ଭ କଲା )

ଅଗଣି—( ଟ୍ରେରେ କିଛି ଦାମିକା ଜଳଖିଆ ନେଇ ବାମପାଖରେ ପଛ ଦରଜା ଭିତରୁ ଆସିଲା, ଟି'ପଏ ଉପରେ ପ୍ଲେଟ ରଖିଲା ଖଟ ପାଖରେ ) ବାବୁ, ଏଥର ଆସନ୍ତୁ ଖାଇବେ ।

ସନ୍ତୋଷ—( ଅନ୍ୟମନସ୍କ ଭାବରେ ) ହଉ ତୁ ଯା, ମୁଁ ଖାଇନେବି ।

ଅଗଣି—ନାଇଁ ବାବୁ, ସେ କଥା ହବନି । ମୁଁ ରହିବି, ତୁମେ ଖାଇବ । (ହସି) ତୁମକୁ ଆଜି ନ ଖୋଇ ଛାଡ଼ିବିନି ।

ସନ୍ତୋଷ—ମୁଁ କ'ଣ ଗ୍ରେଟ ପିଲ ହୋଇଛୁ ?

ଅଗଣି—ହୋଇଛି, ବାବୁ, ତମେ ଯାହା ଖାଉଛ ମୁଁ କ'ଣ ଦେଖୁନ ? ବସ୍କୁଟରୁ ଫାଳେ, ଟୋଷ୍ଟରୁ ଖଣ୍ଡେ, କମଳାରୁ ଦି'ଟା ଫୋଡ଼ା...। ସେସବୁ ଆଉ ହୋଇପାରବ ନାହିଁ । ଆଜ ସବୁ ଖାଇବାକୁ ହବ ।

ସନ୍ତୋଷ——ମତେ ବିରକ୍ତ କରନ, ଅଗଣି ! ( ଉଠିଲ ) ସଖାଙ୍କୁ ଟିକଏ ଲେଖାଲେଖି କରିବାକୁ ବସିଛୁ ଯେ ତମ ପି. ଏ. ବାବୁ ଆସି ମୋ ମୁଣ୍ଡରେ ମାଙ୍କଡ଼ନାଚ ଭର୍ତ୍ତି କରିଦେଲେଣି । ଆଉ ତୁ ଆସିଛୁ ପେଟଟାକୁ ଭର୍ତ୍ତି କରିଦେଇ ଗୁଳିଯିବୁ···

ଅଗଣି—ଆଜ୍ଞା, ପେଟ ପୂରିଲେ ତ ଯୋଉ କଥା ! ତା ପରେ ଲେଖୁନା, ଲେଖ । ପୁରାଣ, ଗ୍ରନ୍ଥ, ଚଉତିଶା, ମାଳିକା ଯାହା ମନକୁ ଆସିବ ଲେଖ, କିଏ ମନା କରୁଛୁ ?

ସନ୍ତୋଷ—ଏମିତ ପେଟ ପୂରିଲେ ଆଉ ଲେଖା ତ ଆସିବନ, ଆସିବ ନିଦ । ( ଖଟ ଗୁଡ଼ି ପୋଫା ପାଖକୁ ଆସି ) ତୁ ଯା, ମୁଁ ସବୁ ଖାଇନେବ ।

ଅଗଣି—ନାଇଁ ଆ ଜ୍ଞା, ସବୁ ଥଣ୍ଡା ହୋଇଯିବ । ସେଠୁ ମାଛି ବସିବ, ସେଠୁ ଆଜ୍ଞା, ହଜାର ରକମର ଜିବାଣୁ···

ସନ୍ତୋଷ—ଅଗଣି !

ଅଗଣି—ଆଜ୍ଞା !

ସନ୍ତୋଷ—ମୁଁ ତ ତତେ ମୂର୍ଖ, ହୁଣ୍ଡା, ହାଉଡ଼ା ଲୋକ ବୋଲି ଭାବିଥିଲି । ତୁ କ'ଣ ରୋଗ, ଜୀବାଣୁ···ଏମିତ କେତେ କଥା ଜାଣିଛୁ !

ଅଗଣି—ଜାଣି ନ ଥିଲି ଆଜ୍ଞା, ହେଲେ ଆମ ଡାକ୍ତରବାବୁ ସବୁ ଗୋଟି ଗୋଟି କରି ବୁଝେଇଦେଇଛନ୍ତି । ପ୍ରତିଦିନ ତମ ଖାଇବା ଆସିବା ଆଗରୁ କ'ଣ କ'ଣ ଖାଇବା ଜିନିଷ ରହିଲି, ଭଲ ହୋଇଛି କି ମନ୍ଦ ହୋଇଛି, ସବୁ କଥା ପରା ଡାକ୍ତରବାବୁ ନିଜେ ଦେଖନ୍ତି ।

ସନ୍ତୋଷ—ସତେ ?

ଅଗଣି—ହଁ ଆଜ୍ଞା, ଗୋଟି ଗୋଟି କରି ଦେଖି ନ ଦେଲେ ତମ ଖାଇବା ଜିନିଷ ଆସେ ନା । ତାଙ୍କ ହୁକୁମ, ତମକୁ ସବୁ ଖୁଆଇ ଦିବାକୁ ପଡ଼ିବ ।

ସନ୍ତୋଷ—ଦେଖ୍ ଅଗଣି, ଖାଇବା ଜିନଷ ତୋ ମାଲିକଙ୍କର ହୁକୁମ ତୋ, ଡାକ୍ତରଙ୍କର । ହେଲେ ପେଟଟା ତ ମୋ ନିଜର । ତା ଉପରେ ଏମିତି ଅତ୍ୟାଚାର କରିବାକୁ ମୁଁ ଦେବିନ ।

ସନ୍ତୁ—( ଚେୟାରରୁ ଉଠିଗଲା )

ଅଗଣି—କ'ଣ କହୁଛନ୍ତି ଆଜ୍ଞା, କିଛି ତ ବୁଝିପାରୁନ । ପେଟଟା ମାଲିକର, ହୁକୁମ ତମର, ଆଉ ଡାକ୍ତର···ଡାକ୍ତର ହେଲେ···ନା, କିଛି ବୁଝିହେଉନି । ଠିକ୍ ଅଛି, ମୁଁ ଯାଉଛି ଡାକ୍ତରବାବୁଙ୍କୁ କହିଦେବି, ସେ ତାଙ୍କର ଯାହା କରିବାର କଥା କରନ୍ତୁ । ( ଟ୍ରେରେ ଜଳଖିଆ ନେଇ ବାମପାଖ ପଛଦରଜାରେ ଚାଲିଗଲା । ସନ୍ତୋଷ ପୁଣି ଖଟ ଉପରକୁ ଯାଇ ଲେଖିବସିଲା । ଅଗଣି ବାମପାର୍ଶ୍ୱ ପଛଦରଜାରୁ ବାହାରି ବାମପାଖ ସାମନା ଦରଜା ଭିତରେ ପଶିଲା । )

ଜୋତାଦୋକାନୀ—( ବାମପାଖ ଦରଜାରୁ ଆସିଲା । ହାତରେ ତା'ର ଜୋତାର ଖୋଳ ମୁହଁଯାଏ cover କରିଥାଏ । ) ନମସ୍କାର, ଆଜ୍ଞା !

ସନ୍ତୋଷ—ତୁମେ ?

ଜୋତାଦୋକାନୀ—ଜୋତା !

ସନ୍ତୋଷ—( ଉଠିଆସିଲା )

ଜୋତାଦୋକାନୀ—( ଜୋତା ଖୋଳସବୁ ଝି'ପଏ, ସୋଫାଉପରେ ରଖିଲା ) ଆଜ୍ଞା, ଡେକ୍ ସୁ, ଫୁଲ୍ ସୁ, ପଏଣ୍ଟେଡ୍ ସୁ, ସାଣ୍ଡେଲ, ଚପଲ, ନାଏଗ୍ରା, ହବୁ ମଡର୍ଣ୍ଣ ସୁ' ହାଉସ । ସେ ବଡ଼ ଦୁକାନ୍ ଆଜ୍ଞା, ଦେଖିନାହାନ୍ତି ? ବକ୍ସିବଜାର ମାର୍କେଟ ଉପରେ, ଆମ ପାଖରେ ଆଜ୍ଞା, କିସମ କିସମର ଜୋତା ପାଇବେ । ବାଟା, ବି. ଏସ. ସି., ଫ୍ଲେକ୍ସ, ଶଗାର, କାନପୁରି, କୋଲପୁରି, କାଶ୍ମୀରି ଆଉ ଆମ କଟକୀ···

ସନ୍ତୋଷ—Stop.

ଜୋତାଦୋକାନୀ—କ'ଣ କହୁଚନ୍ତି, ଅଜ୍ଞା ?

ସନ୍ତୋଷ—ତମେ ଏଠିକୁ କେମିତି ଆସିଲ ?

ଜୋତାଦୋକାନୀ—ଆଜ୍ଞା, ଗେଟ୍‌ଦେଇ, ସେଠୁ ସିଡ଼ିଦେଇ···

ସଞ୍ଜୟ—ସେକଥା ପଚାରୁନ । ଏଠିକି ଆସିବାକୁ ତୁମକୁ କହିଲା କିଏ ?

ଜୋତାଦୋକାନୀ—ଆଜ୍ଞା, ଚୌଧୁରୀ ସାହେବ ।

ସଞ୍ଜୟ—ଓ, ମିଷ୍ଟର ଚୌଧୁରୀ ତମକୁ ପଠେଇଛନ୍ତି ?

ଜୋତାଦୋକାନୀ—ଆଜ୍ଞା, ଆମ ଦୋକାନର ପୁରୁଣା କଷ୍ଟମର । ମୋ କାମ, ଆପଣଙ୍କ ଟ୍ରାଏଲ୍ ନେଇ ପସନ୍ଦ ମୁତାବକ ମନମାଫି ଜିନିଷ ଦେଇଯିବା । ଆପଣ ଟିକିଏ ତକ୍‌ଲିଫ୍ କରି ଏ ନୂଆ ନୂଆ ଭେରାଇଟିର ଜିନିଷଗୁଡ଼ା ଦେଖିନିଅନ୍ତୁ । ଏ ହଳଟା ପିନ୍ଧି ଆପଣ ବାଥ୍‌ରୁମ୍‌କୁ ଯିବେ । ଏ ପେୟାର୍‌ଟା ହେଲା ଆପଣଙ୍କର ବାହାରକୁ ଯିବାପାଇଁ । ଏ ପେୟାର୍‌ଟା ଡିନର ସୁଟ୍ ସାଙ୍ଗରେ । ଏ ପେୟାର୍‌ଟା ଶିକାର ପାଇଁ କିମ୍ବା ଆଉଟ୍‌ଡୋର rough way ପାଇଁ । ଏଇ ଚପଲର ଡିଜାଇନ୍‌ଗୁଡ଼ା ଉପରେ ଟିକିଏ ନଜର ନେଇନିଅନ୍ତୁ ଆଜ୍ଞା, ଲାଇଟ୍ ଯେମିତି show ବି ସେମିତି । ଯା ସାଙ୍ଗକୁ ହରେକ୍ କିସମର ସକ୍‌ସ୍ ବି ଦବା, ଆପଣ ପିନ୍ଧନ୍ତୁ, ଦେଖନ୍ତୁ । ( ବସିପଡ଼ିଲା ) ଆପଣଙ୍କର ଏସବୁ କ'ଣ choice ହେଉନାହିଁ ?

ସଞ୍ଜୟ—ନନ୍ସେନ୍ସ, ନନ୍ସେନ୍ସ, ସୁରଜିତ୍‌ବାବୁ ପଠେଇଛନ୍ତି, ମୋର ପୁଣି choice ହବନ ? ତମ ଦୋକାନ ହେଲା···

ଜୋତାଦୋକାନୀ—Modern Shoe House, Buxi Bazar, Cuttack-1. ଆମ ଦୋକାନର ଜିନିଷ ଉପରେ ସମସ୍ତଙ୍କର ପସନ୍ଦ ଆଜ୍ଞା, ଆପଣଙ୍କର ନ ହେବ କେମିତି ? ନୂଆ ନୂଆ ଇଷ୍ଟାଇଲ୍ ଉପରେ ଦୁସ୍‌ରା ଦୋକାନ ଆଜ୍ଞା, ପୂର୍‌ବ୍ ହାର୍ ମାନିଯିବ । ହଉ ଆଜ୍ଞା, ମୁଁ ତାହେଲେ ଆସୁଚି, ଆଜ୍ଞା ! କିଛି ଯଦି change କରିବାର ହୁଏ ଆମକୁ ଖବର ଦେବେ । ଆମ ଦୋକାନ ଲୋକ ଆସି ଆପଣଙ୍କ ପସନ୍ଦ ମାଫି ଜିନିଷ ଘରେ ଆଣି ଦେଇଯିବ ।

ସଞ୍ଜୟ—ହଉ, ତମେ ଏଥର ଯାଅ ।

ଜୋତାଦୋକାନୀ—ନମସ୍କାର ଆଜ୍ଞା ! ( ଡାହାଣପଟ ଦରଜା ଦେଇ ଚାଲିଗଲା । )

ସଞ୍ଜୟ—( କିଛି ସମୟ ଜୋତାକୁ ଚାହିଁଲା···ବଡ଼ ଝରକା ଦେଇ ବାହାରକୁ ଚାହିଁଲା

ପରେ ସୋଫାରେ ବସି ଲେଢିବାକୁ ଆରମ୍ଭ କକଲେ । ବାମପାଖ ସାମନା ଦରଜା ଦେଇ ଆସିଲେ ଡାକ୍ତର, ପଛରେ ବ୍ୟାଗ୍ ଧରି ଅଗଣି । )

ଡାକ୍ତର—ହ୍ୟାଲୋ ସଞ୍ଜୟବାବୁ, ମର୍ଣ୍ଣିଂ ମର୍ଣ୍ଣିଂ ! ମୁ ଶୁଣିଲି, ଆପଣ କୁଆଡ଼େ ସିରୟସ୍ଲି ଇଲ୍ ?

ସଞ୍ଜୟ—କାହିଁ, କାହିଁ ତ !

ଡାକ୍ତର—ମିଛ କଥା କହୁଛନ୍ତି, ଆପଣ ଜାଣିଛନ୍ତି, ଡାକ୍ତରମାନଙ୍କ ଆଗରେ ମିଛ କଥା କହିଲେ ଚଳିବନି । ସ୍ପେସ୍ୟାଲି ମୋ ପରି ଜଣେ ଏକ୍ସପେରିଏନ୍ସ୍ଡ଼୍ ସ୍ପେସାଲିଷ୍ଟ ପାଖରେ ଆପଣ ମୋତେ ବ୍ଲଫ୍ ଦେଇପାରିବେ ନି ! ଆଇ ନ୍ୟାନ ସି ଇନ୍ସ୍ପୋର୍ଫେସ୍ ଆଣ୍ଡ ଡାଇଗୋନାଇଜ୍ । ଆରେ, ଆପଣ ଠିଆହୋଇ ରହିଲେ କାହିଁକି ? ଶୁଣନ୍ତୁ, ଠିଆ ହେବଟା ଆପଣଙ୍କ ପକ୍ଷରେ କି ବିପଦ୍‌ଜନକ, ତା' ଆପଣ ବୁଝିପାରୁନାହାନ୍ତି ? ( ଷ୍ଟେଥୋ ବାହାର କରି )

ସଞ୍ଜୟ—ମୁଁ କହୁଛି, ମୋର କିଛି ହୋଇନି ।

ଡାକ୍ତର—( ଅଗଣିକୁ ) ୟେ ଇଡିୟଟ୍, ଅନେଇରହିଚୁ କ'ଣ ? ବାବୁଙ୍କୁ ନେଇ ବିଛଣା ଉପରେ ଶୁଆ ।

ଅଗଣି—( ସଞ୍ଜୟକୁ ଧରି ) ଚାଲନ୍ତୁ ବାବୁ !

ସଞ୍ଜୟ—ମୁଁ ପରା କହୁଛି, ମୋର କିଛି ହୋଇନି ।

ଅଗଣି—ଅମାନିଆ ହୁଅନ୍ତୁ ନି ବାବୁ, ଟିକିଏ ବସିଯାନ୍ତୁ ।

ଡାକ୍ତର—ହୁଁ, ଦେଖି ଲାଭଟା, ହୁଁ, ଜୋରରେ ନିଶ୍ୱାସ ନେଲେ । ଆଖିଟା ଦେଖି... ( ପରୀକ୍ଷା କରି ସୋଫା ପାଖକୁ ଆସିଲେ ) ୟେସ୍, ହିଇଜ୍ ଆର ସିରିୟସ୍ଲି ଇଲ୍ । ଲସ୍ ଅଫ୍ ଆପିଟାଇଟ୍ । ଆପଣଙ୍କୁ ଭୋକ ହଉଚ ?

ସଞ୍ଜୟ—ନା !

ଡାକ୍ତର—( ହସିଉଠି ) ଦେଖିଲେ ମୋର ଡାଇଗୋନ୍‌ସିସ୍ ! ଆପଣଙ୍କ ମୁହଁ ଦେଖି ମୁଁ ଠିକ୍ ଜାଣିପାରିଛି । Anorexia, serious, definitely serious ! ଅଥଚ ଆପଣ କହୁଛନ୍ତି, କିଛି ହୋଇନି ! ସେମିତ ହେଲେ

you will die. ହଁ, ଆପଣଙ୍କ stool, urine ରଖିବେ ପରୀକ୍ଷା ପାଇଁ। ତା ଛଡ଼ା ଲିଭର functionଟା ବି test କରିବାକୁ ହବ। ଯାହାସବୁ ଲେଖିଦେଉଛି, ସବୁ ବ୍ୟବହାର କରିବେ। Don't worry, you will get cured. ମୋ ହାତରେ ପଡ଼ିଛନ୍ତି ଯେତେବେଳେ, ଆପଣଙ୍କୁ କ'ଣ ସହଜରେ ଛାଡ଼ୁଛି? ଯେଉଁ ଦିନ ଦେଖିବି, ଆପଣ ଠିକ୍ ମୋ ଭଳି ଖାଉଛନ୍ତି, I will be satisfied. (ଡାକ୍ତର ଚାଲିଗଲେ।)

ଅଗଣି—ଯାହାହେଉ, ରୋଗଟା ଧରା ପଡ଼ିଗଲା। ଆମର ଏ ଡାକ୍ତରବାବୁ ନା, ମୁହଁକୁ ଚାହିଁ ରୋଗ ଚିହ୍ନି ନେବେ। ମୁଁ ଯାଉଚି, ଔଷଧ ସବୁ ନେଇଆସେ। ଆପଣ ଟିକିଏ ଶୋଇପଡ଼ନ୍ତେ। ଡାକ୍ତରବାବୁ କହୁଛନ୍ତି ପରା! ଶୋଇପଡ଼ନ୍ତୁ। (ବ୍ୟାଗ୍ ନେଇ ଡାକ୍ତର ବାବୁଙ୍କ ପିଛା ବାଟେ ଗଲା)

ସନ୍ତୋଷ—(ଲେଖିବାକୁ ବସିଲାବେଳେ ଡାହାଣ ପାଖ ଦରଜାଦେଇ ପଶିଆସିଲା ଦରଜି—ବିଭିନ୍ନ ହ୍ୟାଙ୍ଗର୍‌ରେ ସାର୍ଟ, ସୁଟ୍, ହାଓ୍ୱାଇ, ପଞ୍ଜାବି ନେଇ ଆସିଛି) ତମେ କିଏ?

ଦରଜି—ଆଜ୍ଞା, ମୁଁ . ମୁଁ...

ସନ୍ତୋଷ—କ'ଣ ଦରକାର?

ଦରଜି—ଆଜ୍ଞା, ଭୁଲିଗଲେ ? ଚିହ୍ନି ପାରୁନାହାନ୍ତି ? ଭିଲକ୍ସ ଟେଲରିଂ। ଗତ ସପ୍ତାହରେ ସୁରଜିତବାବୁଙ୍କ ସାଙ୍ଗରେ ଯାଇ ଆପଣ ଯେଉଁ ଅର୍ଡର ଦେଇ-ଆସିଥିଲେ, ସେଗୁଡ଼ିକ ସବୁ ତିଆରି ହୋଇଯାଇଚି। ବଡ଼ ମେହେନତି କାମ, ଆଜ୍ଞା! ହେଲେ ଗରାଖ ମନରେ ଦୁଃଖ ଆମେ ଦେଉନାହିଁ। କବାବ୍‌ରେ ଏପଟ ସେପଟ ନାହିଁ। ଯୋଉ ଡେଟ୍‌ରେ କହିଥିବୁ ଠିକ୍ ସେହି ଡେଟ୍‌ରେ ଡେଲିଭରି ଦେବୁ। ଏଇଟା ଅନ୍ୟ କୋଉ ଦୋକାନରେ ପାଇବେ ନା। ତା' ଛଡ଼ା ଆମର ସ୍ପେସାଲିଟି ହେଲା, ଆମେ ଘରେ ନେଇ ଡେଲିଭରି ଦେଉଁ।

ସନ୍ତୋଷ—ଆପଣ ଦୟାକରି ବାହାରକୁ ଯିବେ କି?

ଦରଜି—ଆଜ୍ଞା, କାହାକୁ କହୁଛନ୍ତି?

ସନ୍ତୋଷ—ଆପଣଙ୍କୁ।

ଦରଜୀ—କାହିଁକି, ଆଜ୍ଞା ? ମୁଁ ଡ୍ରେସ୍‌ଗୁଡ଼ାକ ନେଇ ଆସିଛି ଟ୍ରାଏଲ୍ ନବାପାଇଁ ।
ଦାମିକା କନାଗୁଡ଼ାକ···କାଲେ କୋଉଠି···

ସଞ୍ଜୟ—ଆଜି କିଛି ହୋଇପାରିବନି । ମୁଁ ବ୍ୟସ୍ତ ଅଛି । ଆଉ କେବେ ଆସନ୍ତୁ
ନମସ୍କାର ।

ଦରଜୀ—ନମସ୍କାର । କ୍ଷମାକରିବେ, ଆଜ୍ଞା ! ଗୋଟାଏ ମିନିଟରୁ କାମ ବେଶି ଡେରି
ହବନି । ଆପଣଙ୍କୁ ଡ୍ରେସ୍‌ଟା ଫିଟ୍ କଲା କି ନାହିଁ ଏଇଟା ଦେଖିବା ତ ଆମର
କାମ । ଏଇ କୋଟ୍‌ଟା ଦେଖନ୍ତୁ···ଆସନ୍ତୁ···

ସଞ୍ଜୟ—ବାହାରିଯାଅ ! Get out ( ବାମପାଖ ଦରଜା ପାଖକୁ ଯାଇ )
Get out, I say, get out.

ଶିଖା—( ଦରଜୀ ପଳାଇଯାଇଛି ଡାହାଣପାଖ ଦରଜା ଦେଇ ; ଶିଖା ମଧ୍ୟ ଆସିଛି
ସେଇବାଟେ ) କେହି ନାହାନ୍ତି ତ । କାହାକୁ କହୁଛନ୍ତି ?

ସଞ୍ଜୟ—ଆପଣଙ୍କୁ ।

ଶିଖା—( ହର୍ଷ ) କାହିଁକି ?

ସଞ୍ଜୟ—ଏଠିକି କାହାର ଆସିବା ଦରକାର ନାହିଁ । ମୁଁ ଏକା ରହିବାକୁ ଚାହେଁ ।
Just alone. ( ବୁଲି ଯାଉଯାଉ )

ଶିଖା—କ୍ଷମା କରିବେ । ( ସୋଫାରେ ବସିପଡ଼ିଲା ) ମୋର କାମ ନ ସାରି ମୁଁ
ଏଠୁ ଯାଉନି ।

ସଞ୍ଜୟ—କିନ୍ତୁ ଏଠି ଆପଣଙ୍କର କି କାମ ?

ଶିଖା—ଆପଣଙ୍କର ଲେଖା !

ସଞ୍ଜୟ—ଲେଖା ?

ଶିଖା—ହଁ, ଲେଖା ଆପଣଙ୍କର କେତେଦୂର ଗଲା ? ସେଇଟା ଦେଖିବା ମୋର
କାମ ।

ସଞ୍ଜୟ—ବୁଝିଲି ।

ଶିଖା—କ'ଣ ଲେଖିଛନ୍ତି ? କବିତା ନା କ୍ଷୁଦ୍ରଗଳ୍ପ ?

ସଞ୍ଜୟ—ପ୍ରବନ୍ଧ ।

ଶିଖା—ପ୍ରବନ୍ଧ !

ସଞ୍ଜୟ—ଦେଖୁ ନାହାନ୍ତି ଏ ଘର...ଏଇ କ'ଣ ମୋ ଲେଖାର ଯଥେଷ୍ଟ ପରିଚୟ ନୁହେଁ ?

ଶିଖା—Oh, what hell ! ଅଗଣି ! ଅଗଣି !

ଅଗଣି—( ଔଷଧ ହାତରେ ଆଣି ଆସିଲା ବାମ ପାଖରୁ ସାମନା ଦରଜା ଦେଇ ) ଦେଇ !

ଶିଖା—କ'ଣ ହୋଇଛି ଏ ଘର ?

ଅଗଣି—ନିତି ନିତି ସକାଳୁ ତ ଗାଡ଼ିଏ ଗାଡ଼ିଏ କାଗଜ ବାହାର କରିନେଉଚି । (କହୁ କହୁ କୋଡାଖୋଲ, କୋଡା ସବୁ ଧରି ବାମପାଖ ପଛ ଦରଜା ଦେଇ ଚାଲିଗଲା ) ।

ଶିଖା—ଛି ଛି, ଏମିତି ରହିଲେ ଯେକୌଣସି ଲୋକ ପାଗଳ ହୋଇଯିବ ।

ସଞ୍ଜୟ—ମୁଁ ଏତେ ଚଞ୍ଚଳ ପାଗଳ ହୋଇଯାଉନି, ଶିଖା ଦେବୀ ! ଏଇ ଘର, ଏଇ ପରିବେଶ, ଆଉ ଏଇ care ମଧ୍ୟରେ କିଏ, କ'ଣ ପାଗଳ ହୁଏ ! ତା ଛଡ଼ା ସୁରଜିତବାବୁଙ୍କର ଏତେ ବଦାନ୍ୟତା...ଏ ଋଣର ବୋଝ ବୋହି ମୁଁ ବା ପାଗଳ ହେବ କେମିତି ?

ଶିଖା—ଆକ୍ଷେପଟା ବୁଝିପାରିଲିନି ।

ସଞ୍ଜୟ—ଆପଣଙ୍କୁ କଷ୍ଟ କରିବାକୁ ପଡ଼ିବନି, ଆଜ୍ଞା ! ଦୟାକରି ସୁରଜିତ୍‌ବାବୁଙ୍କୁ ବୁଝାଇଦେବେ, ମିଛରେ ମୋ ପରି ଗୋଟାଏ ସାଧାରଣ ଲୋକକୁ, ସାହିତ୍ୟିକ, କବି ପ୍ରତିଭାର ଫାଙ୍କା ଖୋଳରେ ବହୁରୂପୀ ସଜେଇ, ଏଠିକି ନେଇଆସି ଚୌଧୁରୀ-ବଙ୍ଗଳାକୁ ଗୋଟାଏ ଧର୍ମଶାଳା କରନ୍ତୁ ନି ! ଏଥିରେ ନିଜେ ତ ଶାନ୍ତି ପାଇବେନି, ତା'ଛଡ଼ା ପିତୃପୁରୁଷଙ୍କର ଆତ୍ମା ବି ସ୍ୱର୍ଗରେ ଥାଇ ଶାନ୍ତି ପାଇବେନି ।

( ସୁରଜିତ୍ ବାମପାଖ ସାମନା ଦରଜା ଦେଇ ପଶିଆସିଲେ ମଞ୍ଚକୁ )

ସୁରଜିତ୍—ମୋ ପିତୃପୁରୁଷ ଅଶାନ୍ତିରେ ରହିଲେ କି ନ ରହିଲେ, ଏଥିରେ ତୁମର ସହାନୁଭୂତି ମୁଁ କେବେ ଭୁଲିପାରିବିନି । କିନ୍ତୁ ତୁମ ଲେଖା ?

ଶିଖା—ମୁଁ ବି ତାଙ୍କୁ ଠିକ୍ ସେଇୟା କହୁଥିଲି, ଜିତୁଭାଇ !

ସୁରଜିତ୍—ମୁଁ ସବୁ ଶୁଣିଛି । ଆଚ୍ଛା, ଶିଖା, ତୋ ଉପରେ ଭାର ଦିଆଗଲା, ତୁ ତାଙ୍କୁ ଏନ୍‌କରେଜ୍ କରିବୁ । ତା ନ କଲେ ସେତେ ସବୁ ବାଜେ ଗପ କରୁଛନ୍ତି !

ଶିଖା—ନାଇଁ ଜିତୁଭାଇ, ସଞ୍ଜୟବାବୁ କହୁଥିଲେ କ'ଣ କି, ଏଠି, ମାନେ···ମାନେ··· ତାଙ୍କୁ କିଛି ଭଲ ଲାଗୁନି ।

ସୁରଜିତ୍—ଠିକ୍ ଅଛି, ମୁଁ ବରଂ ବ୍ୟବସ୍ଥା କରିଦେଉଛି । ସେ ଗୋଟିଏ ଟ୍ରେନ୍‌ରେ ଯାଇ ବାହାରେ ବୁଲିଆସୁ ।

ଶିଖା—କ'ଣ ସଞ୍ଜୟବାବୁ ! ଚୁପ୍‌ଚାପ୍ ରହିଲେ ଯେ ? ଟ୍ରେନ୍‌ରେ ଯିବାକୁ ଚାହାନ୍ତି ଆପଣ ? ଆପଣ ଗଲେ ଆପଣଙ୍କ ସାଙ୍ଗରେ ମୁଁ ବି ଯାଆନ୍ତି । ଓଃ, ଏଠି ଯେ କି ବୋର୍ ! କେଉଁ ଠିକି ଯିବେ ?

ସୁରଜିତ୍— ଦାର୍ଜିଲିଂ, ସିମ୍‌ଲା, ମସୌରୀ, କାଶ୍ମୀର···ସେଇଟା ତୁମେ ଦୁଇଜଣ ଡିସାଇଡ୍ କର । ସବୁ ବ୍ୟବସ୍ଥା କରିଦେଉଛି ମୁଁ । ଡ୍ରାଇଭର···(ଡାହାଣ ପାଖ ଦେଇ ବାହାରକୁ ଚାଲିଗଲେ )

ଶିଖା—ସଞ୍ଜୟବାବୁ ! ଦାର୍ଜିଲିଂ, ସିମ୍‌ଲା, ମସୌରୀ, କାଶ୍ମୀର···

( ଅଗଣି ବାମପାଖ ପଛ ଦରଜାରୁ ଆସିଲା )

ଅଗଣି—ଆଜ୍ଞା, ମାଙ୍କଡ଼ ଆସିଛି ।

ଶିଖା—ମାଙ୍କଡ଼ !!!

ଅଗଣି—ମାଙ୍କଡ଼ନାଚ ।

ସଞ୍ଜୟ—ଡାକିଆଣ । ( ଅଗଣି ବାମପାଖ ଦରଜା ଦେଇ ଗଲାବେଳକୁ )

ଶିଖା—କ'ଣ, ଏଇଠିକି !?

ସଞ୍ଜୟ—ସମସ୍ତେ ତ ନାଚିଯାଉଛନ୍ତି । ଆଉ ସେ ବ କାହିଁକି ବାଦ୍ ଯିବ ?

ଶିଖା—ଏ ମା ! ମାନେ, ମାଙ୍କଡ଼···ଏଇଠି···

ସଞ୍ଜୟ—ଇତିହାସ କହେ, ମଣିଷର ଅତୀତଟା ହେଲା ମାଙ୍କଡ଼ । ବୁଝିଲେ ?

( ଲାଇଟ୍ ଲିଭିଗଲା )



## ଦ୍ୱିତୀୟ ଦୃଶ୍ୟ

[ ଆକାଶରେ ସୂର୍ଯ୍ୟୋଦୟ । ସଞ୍ଜୟର ରୁମ୍ । ସଞ୍ଜୟର ପି. ଏ. ସୁଇଚ୍ ଅନ୍ କଲେ । ରୁମ୍‌ର କାନ୍ଥର ଲାଇଟ୍‌ଗୁଡ଼ା ଜଳିଉଠିଲା । ଖଟର ବିଛଣାପତ୍ର ଓ ଟେବୁଲ୍ କ୍ଲଥ ସବୁ ପି. ଏ. ଙ୍କ ନିର୍ଦ୍ଦେଶରେ ବଦଳେଇ ଦେଉଥାଏ ଅଗଣି । କାନ୍ଥର date padରେ ତାରିଖ ବଦଳିଥିବାର ସୂଚନା ଦେଖାଯାଏ ]

ପି. ଏ.—ନା, ନା, ସେ ବିଛଣା ଗୁଡ଼ାକର ଚଳିବନି । ତାକୁ change କର । ଆଉ ଏଠି ଟିପଏ ଉପରେ ଗୋଟାଏ ଆସ୍-ଟ୍ରେ ରଖ । ଆରେ, ସଞ୍ଜୟବାବୁ ସିଗାରେଟ୍ ନ ଖାଉଥିଲେ ବି, ତାଙ୍କୁ ଦେଖା କରିବାକୁ ଯେଉଁମାନେ ଆସୁଛନ୍ତି ସେମାନେ ତ ସ୍ମୋକ କରନ୍ତି ।

ମଳୟା ଦେବୀ—( ବାହାରପଟୁ ଡାହାଣ ଦ୍ୱାର୍ ଦେଇ ଆସିଲେ ) ସ୍ତୋଭଂଟା ଆମ ଦେଶରେ ଏମିତ ଗୋଟାଏ ହୋଇଗଲାଣି ଯେ ଅ.ଠରୁ ଅଣୀ ଯାଏ ସମସ୍ତଙ୍କ ମୁହଁରେ ଦେଖିବ ସିଗାରେଟ୍ । ଓଃ, କ କଷ୍ଟରେ ଆସେମ୍ବ୍ଲିରେ ମୁଭ୍ କରି ସିନେମା, ଥିଏଟରରୁ ଏଇଟା ଉଠାଇଦେଲି । ଦେଖିଲିବେଳକୁ ଟ୍ରେନ୍‌ରେ ଚାଲିଛି ସ୍ତୋଭଂ ! ( ବସିଲେ )

ପି. ଏ.—ନମସ୍କାର ! ଆପଣ ପୁଷ୍କରୁ କେବେ ଆସିଲେ ?

ମଳୟା—ହଁ, ଏଇତ ଅସୁଛି । କିନ୍ତୁ ଏ କ'ଣ ? ଏସବୁ ଏଠି···କ'ଣ ଚାଲିଛି ?

ପି. ଏ.—ସନ୍ତୋଷବାବୁଙ୍କ ପାଇଁ ।

ମଳୟା—ସେ କିଏ ?

ପି. ଏ.—ଲେଖକ ସନ୍ତୋଷ ଦାସ । ତାଙ୍କୁଇ ନେଇ ତ ସୁରଜିତ୍‌ବାବୁଙ୍କର ଖିଆଲ ।

ମଳୟା—ସୁରର···

ପି. ଏ.—ହଁ, ହଠାତ୍ କ'ଣ ମନେ ହେଲା, ଏଇ ବିଖ୍ୟାତ ଲେଖକଙ୍କୁ ଗୋଟାଏ କେଉଁ ଅଖ୍ୟାତ କୁଲି ବସ୍ତିରୁ ଟାଣିଆଣିଛନ୍ତି ଏଠିକି । ତାଙ୍କ ପାଇଁତ ଚାଲିଚି ଗୋଟାଏ ରାଜକୀୟ ବ୍ୟବସ୍ଥା । ସେଥିରେ ପୁଣି ଶିଖା ଦେବୀଙ୍କୁ ଦାୟିତ୍ୱ ଦିଆଯାଇଛି ତାଙ୍କୁ mccdରେ ରଖିବାକୁ ।

ମଳୟା—ଦେବୀଙ୍କୁ ତା ସହିତ···

ପି. ଏ.—ନା ନା, ଆପଣଙ୍କର ବ୍ୟସ୍ତ ହେବାର ଏଥିରେ କିଛି ନାହିଁ । ଶିଖାଦେବୀ ତାଙ୍କର ଖାଲି ଦେଖାଶୁଣା କରୁଛନ୍ତି ।

ମଳୟା—ଗଲି ! କେଇଟା ଦିନ ପାଇଁ ମୁଁ ପୁଷ୍କରେ ସାହିତ୍ୟ ସମ୍ମିଳନୀ attend କରିବାକୁ ଗଲି । ସ୍ୱା'ର ଭିତରେ ଏତେଗୁଡ଼ାଏ ଦୁର୍ଘଟଣା ହୋଇଗଲା ! ସେ ଗଲା କୁଆଡ଼େ ? ମୁଁ ବର୍ତ୍ତମାନ ତାକୁ ଏଠୁ ନେଇଯିବି ।

ପି. ଏ.—ସେ ତ କିନ୍ତୁ ନନ୍ଦନ କାନନ ଯାଇଛନ୍ତି ।

ମଳୟା—କ'ଣ ସୁରଜିତ୍ ସାଙ୍ଗରେ ?

ପି. ଏ.—ଆଜ୍ଞା ନା, ସଞ୍ଜୟବାବୁଙ୍କ ପାଖରେ ।

ମଳୟା—ଏକା ଏକା ସଞ୍ଜୟ ପାଖରେ ଦେଖା ଯାଇଛ ! ଗଲ...ମାନ, ଇଜ୍ଜତ ସବୁ ଗଲ !

ପି. ଏ.—ନାହିଁ ଆଜ୍ଞା, ଏଇ ଅଶୁଥିଲେ କ କ'ଣ...

ମଳୟା—ଆରେ, India Govrnmentର retied deputy Sersretaryର ଝିଅ ଗୋଟାଏ ଅଜଣାଲୋକ ପାଖରେ...ତମେ ଆଉ ଡେରି କରନା, ଡ୍ରାଇଭରକୁ କୁହ ଗାଡ଼ି ବାହାର କରୁ । ଆରେ, ଖେଳଘର ଲାଗିଛ ! ( ମଳୟା ଦେବୀ ଉଠୁଥିଲେ )

ପି. ଏ.—ଏଇ ତ ସେମାନେ ଆସୁଛନ୍ତି । ଆପଣଙ୍କୁ ଆଉ ଯିବାକୁ ପଡ଼ିବନି । ( ମଳୟା ଦେବୀ ବାହାରକୁ ଚାହିଁଲେ । ସଞ୍ଜୟ ଓ ଶିଖା ଡାହାଣ ପାଖ ଦରଜା ଦେଇ ଆସିଲେ )

ଶିଖା—ଆରେ, ବୋଉ ! ତୁ ପୁରୀରୁ ଆସିଲୁଣି ? ( ବୋଉକୁ ଧରି )

ମଳୟା—ହଁ, ଘରକୁ ଚାଲ, ଆ ।

ଶିଖା—ହଉ । ଆଗେ ଏଇ ସଞ୍ଜୟବାବୁଙ୍କ ପାଖରେ ତୋର ଟିକିଏ ପରିଚୟ କରାଇଦିଏ । ଏ ହେଉଛନ୍ତି ବିଖ୍ୟାତ ଲେଖକ ସଞ୍ଜୟ ଦାସ । ତାଙ୍କ ଲେଖା ପଢ଼ିଲେ ତୁ ପାଗଳ ହେଇଯିବୁ, ବୋଉ ! କି ଶବ୍ଦ, କି ପ୍ଲଟ, କି ମନସ୍ତାତ୍ତ୍ୱିକ ବିଶ୍ଳେଷଣ, କି ଚରିତ୍ରଚିତ୍ରଣ ! ସଞ୍ଜୟବାବୁ, ଏ ହେଉଛି ମୋର ବୋଉ...ଓଡ଼ିଶାର ବିଶିଷ୍ଟା ଆଉ ଶ୍ରେଷ୍ଠା ନାୟିକା ମଳୟା ଦେବୀ ।

ସଞ୍ଜୟ—( ନମସ୍କାର କଲ )

ମଳୟା—ବାଃ, ମୁଁ ଭାରି ଖୁସି ବାବା, ଭାରି ଖୁସି । ଲେଖିଚାଲ, ଆଗେଇଚାଲ ! ମୋଠୁ ଯେତେବେଳେ ଯାହା ଦରକାର ହେବ, ନିଃସଙ୍କୋଚରେ କହିବ । ତମେ ମୋର ପୁଅ ପରି । ମୁଁ ବି ସୁରକୁ କହିବି, ତମର ଯେମିତି ଆହୁରି ସୁବିଧା ହୁଏ, ତା'ର ବ୍ୟବସ୍ଥା କରିବ ।

ସନ୍ତୋଷ—ମୁଁ ତ ଖୁବ୍ ଭଲରେ ଅଛି । ସୁରଜିତ୍‌ବାବୁ ମୋ ପାଇଁ ଯାହା ଯାହା କରିଛନ୍ତି, ଅନେକ ବେଶି ହୋଇଯାଉଚି ବୋଲି ମୁଁ ଭାବୁଚି ।

ପି. ଏ.—କ୍ଷମା କରିବେ । ଆଠଟା ଠିକ୍‌ରେ ଆପଣଙ୍କର ସାହିତ୍ୟ ସମ୍ପାଦକ ସମ୍ପାଦକଙ୍କ ସହିତ କଥାବାର୍ତ୍ତା ଥିଲା । ଆପଣ ପ୍ରସ୍ତୁତ ହୋଇପଡ଼ନ୍ତୁ ।

( ପି. ଏ. ତାହାଣ ଦୁଆର ଦେଇ ଚାଲିଗଲେ )

ମଳୟା—ତମେ ଯାଅ, ଯେମାନଙ୍କ ସାଙ୍ଗେ ଦେଖାକର, ଆଳାପ ଆଲୋଚନା କର । ସେଇମାନେ ତ ହେବେ ତୁମ ଲେଖାର ସମାଲୋଚକ । ସେମାନେ ଚାହିଲେ ତୁମକୁ କୋଉଠି ବୋଲି କୋଉଠି ନେଇ ବସେଇଦେବେ । ଯାଅ, ଟାଇମ୍ ତ ହୋଇଗଲା । ଏଇଠି ଅଛ ତ, ଦେଖା ପୁଣି ହେବ । ( ସନ୍ତୋଷ ବାମପାଖ ପଛ ଦରଜା ଦେଇ ଚାଲିଗଲା ) ଏ ଗ୍ରହଟି ଆସି କେମିତି ଏଠି ଜୁଟିଲା ?

ଶିଖା—ଗ୍ରହ !!! କିଏ ?

ମଳୟା—କେଉଁଠି କୁଳବସ୍ତିର କିଏ ବୋଲି କିଏ ଗୋଟାଏ ! ଦୁନିଆଯାକ କେଉଁଠି ଆଉ ତାକୁ ଜାଗା ମିଳିଲା ନାହିଁ ଯେ, ତାକୁ ଆଣି ନିଜ ଘରେ···ଛି···ଛି···

ଶିଖା —ଓ, ତୁ ଏଇ ସନ୍ତୋଷବାବୁଙ୍କ କଥା କହୁଚୁ ତ ?

ମଳୟା—କ'ଣ ନା, ଗୋଟାଏ ଲେଖକ ! ଆଜିକାଲି ସମସ୍ତେ ଗୋଟାଏ ଗୋଟାଏ ଲେଖକ ହୋଇଗଲେଣି ।

ଶିଖା—କ'ଣ ତୋର ଈର୍ଷା ହେଉଚି ? ଆଚ୍ଛା, କୋଉ ' କୋଉ କାଳେ କ'ଣ ଗୋଟାଏ ତୁ ଲେଖିଥିଲୁ ଯେ ଆଜିଯାକେ ଶ୍ରେଷ୍ଠ ଆଉ ବିଶିଷ୍ଟ ନାରୀ କବି ବୋଲଉଚୁ । ଆଉ କିଏ ଲେଖିଲେ ତୋର ରାଗ !

ମଳୟା—କ'ଣ କହିଲୁ ? କୋଉ କାଳେ ଲେଖିଥିଲି ? ଏବେ କଣ ମୁଁ ଲେଖୁନାହିଁ ? ମୋ ଲେଖା ପବ୍ଲିଶ ହଉନି ? ବ୍ରଡ଼୍‌କାଷ୍ଟ ହଉନି ? ଏକାବେଳେକେ ତିନିତିନିଟା ପତ୍ରିକାର ମହିଳା ମହଲ ପରିଚାଳନା କରୁଚି କିଏ ?

ଶିଖା—ତୁ । ହେଲେ, ବୋଉ, ତୋ ଲେଖାଗୁଡ଼ା, ଯାହାକୁ କହନ୍ତି, ପରନିନ୍ଦା ପରଚର୍ଚ୍ଚା, ଗାଳି । ମାନେ, ତୋ ଭାଷାରେ ସମାଲୋଚନା ।

ମଳୟା—ସମାଲୋଚନା ତୁ କ'ଣ ବୁଝୁ ? ଆଲୋଚନା କରିବାକୁ ଗଲେ ଦୋଷଗୁଣ ବିଚାର କରି ଲେଖିବ ନାହିଁ ତ ହେବ କେମିତି ?

ଶିଖା—ଆଚ୍ଛା ବୋଉ, ତୁ ସନ୍ତୋଷବାବୁଙ୍କ ବହି ପଢ଼ିଚ ?

ମଳୟା—ଓଃ, ଭାରି ଗୋଟାଏ ଲେଖକ ଯେ, ତା ବହି ପୁଣି ମୁଁ ପଢ଼ିବି ! କେତେ ଖଣ୍ଡ ବହି ଲେଖିଚି ?

ଶିଖା—ଖଣ୍ଡେ ।

ମଳୟା—କି ବହି ?

ଶିଖା—କୁଳିବସ୍ତିର କବିତା ।

ମଳୟା – କ'ଣ କହିଲୁ ? କୁଳିବସ୍ତିର କବିତା ? କୁଳିମାନଙ୍କର ବସ୍ତି, ସେଠି ପୁଣି କବିତା ! କଣ ଯେ ଆଜିକାଲି ଲେଖୁଛନ୍ତି ! ହୁଁ, କୁଳିବସ୍ତିର କବିତା ନ ଲେଖି ଆଉ କଣ ଯେ ଲେଖନ୍ତା ? ଆଉ କାହୁ ବଡ଼ ବଡ଼ ଆଇଡ଼ିଆ ମୁଣ୍ଡରେ ଢୁକିଲେ ତ ।

ଶିଖା – ଅନ୍ତତଃ ତୋ ମୁଣ୍ଡରେ ଯେଉଁ ଉର୍ବର ଆଇଡ଼ିଆଗୁଡ଼ାକ ଅଛି ନା, ତା ଠାରୁ କିଛି ଢେର ଭଲ ।

ମଳୟା – ତୁ ପୁଣି ଗୋଟାଏ ମୋ ମୁଣ୍ଡର ଆଇଡ଼ିଆ ବୁଝିବାକୁ ମଣିଷ ହେଲୁଣି ! ଛି ଛି, ସୁରଟା ବା କ'ଣ ଦେଖି ସେଇଟାକୁ ଆଣି ଘରେ ଜାଗା ଦେଲା କେଜାଣି । ଆସୁ ସେ ଆଜି, କହୁଚି ।

ଶିଖା – ଆଚ୍ଛା, ଜଟୁଭାଇ ତ କିଛି ନ ବୁଝି ନେଇଆସିଲେ, ଆଉ ଏଇ ଟିକକ ଆଗରୁ କଣ ବୁଝି ଲମ୍ବା ଆଶୀର୍ବାଦଟାଏ ଛାଡ଼ି କହୁଥିଲୁ, ଲେଖ ବାବା, ଲେଖ, ଯେତେବେଳେ ଯାହା ଦରକାର ହେବ ନିଃସଙ୍କୋଚରେ ପଚାରିବ, ତୁମେ ତ ମୋର ପୁଅ ପରି !

ମଳୟ୍ଧା — ବିରକ୍ତ କରନା କହୁଚ ! ପୁରୁ ପେଁଶକ । ଖାଡ ଅନଦ୍ରା । ଆଜିକାଲି first classରେ travel କଲେ ବି ଆରାମ ନାହିଁ । ଯାହା ଓଡ଼ିଶା ହେଇଚନ୍ତି ନା…

ଶିକ୍ଷା — Railwayର କମ୍ପଲେନ୍ ବୁକ୍‌ରେ ଲେଖିଆସିନୁ ତ ?

ମଳୟ୍ଧା — ଲେଖିବିନି, ଗୁରୁଦେବ ? ସିଧା ଦୁଇପେଜ୍ ଲେଖିଦେଇଆସିଚି । ଖାଣ୍ଟି କଥା କହିବାରେ ମୁଁ କାହାକୁ ଖାତିର କରେନି ।

ଶିକ୍ଷା — ବୁଝିଲୁ ବୋଉ, ଏ ଓଡ଼ିଶଗୁଡ଼ା ସିନା ଗ୍ରେଟ୍, ହେଲେ ଯାହା କହ ପଛେ ସେମାନେ ଲୋକ ଚହ୍ନିବାରେ ଭୂଲ କରନାହାନ୍ତି ; ଓଡ଼ିଶାର ବଶିଷ୍ଟ ନାଟ କବିଙ୍କୁ ସମ୍ବର୍ଦ୍ଧନା କରିବାକୁ ଭୁଲନାହାନ୍ତି ।

ମଳୟ୍ଧା — ତୁ କଥାରେ ଚୋର ଅଛି ।

ଶିକ୍ଷା — ହଉ, ସାହିତ୍ୟ ସମ୍ମିଳନୀର ଖବର ଟିକେ କହ, କେମିତି ହେଲା । କେମିତି ହେଇଥିଲା ?

ମଳୟ୍ଧା — ଚମତ୍କାର ବ୍ୟବସ୍ଥା । ଆମର କେତେ ଜଣଙ୍କର ରହିବାର ବ୍ୟବସ୍ଥା Railway hotelରେ ହୋଇଥିଲା । କିଛି ଅସୁବିଧା ହେଇନି ।

ଶିକ୍ଷା — ହୋଟେଲ କଥା ନୁହେଁ, ମୁଁ ପଚାରୁଚି, ସମ୍ମିଳନୀ କେମିତି ହେଲା ? ଆଉ କିଏ କିଏ ସବୁ ଆସିଥିଲେ ?

ମଳୟ୍ଧା — ଓଡ଼ିଶାର ସବୁ ବଶିଷ୍ଟ କବି ତ ଆସିଥିଲେ; ତା’ଛଡ଼ା ବାହାରୁ ତାରାଶଙ୍କର, ପ୍ରେମେନ୍ଦ୍ର, ପ୍ରବୋଧ, ମୁଲକରାଜ ଆନନ୍ଦ, ମାମାଓ୍ୱାରେରକର, ଆଶାପୂର୍ଣ୍ଣାଦେବୀ ଓ ଆହୁରି କେତେ ସବୁ । ତୁ କ’ଣ କାହାକୁ ଚହ୍ନିବୁ ? ( ବାମପାଖ ସାମନା ଦରଜା ଦେଇ ଖଣ୍ଡେ ଖବରକାଗଜ ଧରି ପଶିଆସିଲେ ସୁରଜିତ୍ )

ସୁର — ସାହିତ୍ୟ ସମ୍ମିଳନୀର ଖବର ବାହାରିଚି ମାଉସୀ !

ଶିକ୍ଷା — ବୋଉର ଭାଷଣଟା ବାହାରିଚି କି ନାହିଁ ଆଗ କହିଲ ଜିବୁଭାଇ !

ସୁର — ( କାଗଜରେ ଖୋଜୁ ଖୋଜୁ ) ନିଶ୍ଚୟ ବାହାରିଥିବ ।

ଶିଖା—କ'ଣ, ପାଉନାହାନ୍ତି ! ଆଲୋ ବୋଉ, ତୁ ଏଥର କିଛି କହୁନୁ କି ?

ମଳୟା—କହୁନ ! ଦୀର୍ଘ ତିନି ଘଣ୍ଟା ଧରି କହୁଚ ।

ଶିଖା—ଦେଖି କ'ଣ ହେଲା ? ଥରେ ଆରମ୍ଭ କଲେ ତୁ ତ ତିନି ଘଣ୍ଟାରୁ କେବେ କମ୍ କହୁନ ।

ମଳୟା—ଏଇ ତିନି ଘଣ୍ଟା ଭିତରେ ଅନ୍ତତଃ ଦଶଥର clapping, କୋଉଥର ହିଅର୍ ହିଅର୍ ହୋଇଥିବ, ତୁ କୁଆଡୁ ବୁଝିବୁ !

ଶିଖା—କ'ଣ, ସେଗୁଡ଼ା ସମ୍ମିଳିତ ନା ବ୍ୟକ୍ତିଗତ ?

ସୁର—ହଁ, ଏଇଠି ବାହାରିଚ ।

ଶିଖା—ବାହାର ନ କରି ସେମାନଙ୍କର ଗୃହ ଅଛି ! ସବୁଗୁଡ଼ାକ କାଗଜର ଅଫିସ୍ ତ କଟକରେ । ବୋଉ ନାଁ ବାହାର ନ କଲେ ବୋଉ ସିଧା ସମ୍ପାଦକଙ୍କ ଅଫିସ୍‌ରେ ହାଜର ହେଇ ତାଙ୍କ ଚଉଦପୁରୁଷ ଶ୍ରାଦ୍ଧ କରିଆସିବ ନା !

ମଳୟା—ବେଶ !!

ଶିଖା—ଦେଖି, କଉଠାଇ, ବୋଉ ଭାଷଣ ବିଷୟରେ କ'ଣ ବାହାରିଚି ! (କାଗଜ ଦେଖି) ଆଲୋ ବୋଉ, ତୁ କୁଆଡ଼େ ଭାଷଣ ଦେଲାବେଳେ ଏତେ ପାଟିତୁଣ୍ଡ ହେଲା ଯେ କେହି କିଛି ଶୁଣିପାରଲେ ନାହିଁ ! ହଉ, ସେଥିରେ କ'ଣ ଅଛି ? ସମ୍ପାଦକଙ୍କର ଯେବେ ଦାୟିତ୍ୱଜ୍ଞାନ ଥିବ, ସେ ଘରକୁ ଆସି ତୋ ଭାଷଣଟା ଆଉ ଥରେ ଟିପି ନେଇଯିବେ ନା ! ଆରେ, ତୋ ଫଟୋଟା ବି ବାହାରିଛି ମ, ବୋଉ ! ଛି ଛି, ତୋ ଫଟୋଟା ତ ! ଚହ୍ନି ହଉନି । ଅବଶ୍ୟ ବଡ଼ ବଡ଼ ଅକ୍ଷରରେ ତଳେ ଲେଖା ହୋଇଚ, ବିଶିଷ୍ଟା ନାରୀ କବି ମଳୟା ଦେବୀ ।

ମଳୟା—ମୁଁ କହୁଚ କଉ, ପତ୍ରିକା ଛପାଇଲା ଭଳି ଶକ୍ତି ଯଦି ଏମାନଙ୍କର ନାହିଁ, ଏମାନେ ସବୁ ଦାୟିତ୍ୱପୂର୍ଣ୍ଣ କାମରେ ହାତ ଦିଅନ୍ତି କାହିଁକି ?

ସୁର—ଆପଣ ଦେଖନ୍ତୁ, ଏହି ବିଷୟ ଆଲୋଚନା ପାଇଁ ମୁଁ ଏ ସପ୍ତାହକ ଭିତରେ ଗୋଟାଏ ବିରାଟ ସଭା କରିବାର ବ୍ୟବସ୍ଥା କରୁଛି ।

ଶିଖା—ସେ ସହରରେ ବୋଉ ଭାଷଣ ଦେବ ବୋଲି ପ୍ରଚାର କରିବେ ନାହିଁ କି ! ତା' ହେଲେ ପଇସା ଦେଇ ଲୋକ ଯୋଗାଡ଼ କରିବାକୁ ପଡ଼ିବ ।

ମଳୟା—ଦେଖୁଚ, ସୁର ! ତୁ ଚୁପ୍ କରୁ ( ଶିଖାକୁ ) !

ସୁର—ଅଖଣ୍ଡ ଆଗୁର ଚଞ୍ଚଳ ହୋଇପାରନ୍ତା । ହେଲେ କ'ଣ କରିବ ? ଗାଁରେ ବୋଉ ଦେହ ଖରାପ, ଏଠି କୋଠା ଭଡ଼ା ହବ, ଏଥର ପୁଣି ପୁଷ୍ପରେ ଡ୍ରାମା ଫେଷ୍ଟିଭାଲ···ଗୋଟାଏ ଲୋକ, କେତେ ଆଡ଼େ ହେବ ମୁଁ ?

ମଳୟା—ମୁଁ ତ ଅନେକ ଥର କହୁଚ, ବୋଉଙ୍କୁ ତୁମେ କଟକ ନେଇଆସ । ବୋଉ ତ ଏକା; ଏଠି ପୁଅ ପାଖରେ ନ ରହି ଗାଁଟାରେ ରହୁଛନ୍ତି କାହିଁକି ମୁଁ ବୁଝିପାରୁନି । ଓଃ, କି ଯେ କଷ୍ଟ ! ଦୁଇଟା ମାସ ତ ! ସିଧା କହିଦେଲି, ବଞ୍ଚିଥିବାଯାଏ ଏ ଗାଁ ମାଟି ଆଉ ମାଡ଼ିବ ନ ।

ଶିଖା—ତାଙ୍କ ବୋଉ ତ ତୋ ପରି ପ୍ରଗତିଶୀଳା ବଶିଷ୍ଟା ନାୟିକାଟି ନୁହନ୍ତି ଯେ ଏ କଟକ ସହରର ସିନେମା ଥିଏଟର, ସଭା ସମ୍ମିଳନୀ, ପାର୍ଟି, ଡିନର ତାଙ୍କୁ ବାନ୍ଧି ରଖିପାରିବ ! ସେ ହେଲେ ଚୌଧୁରୀ ବଂଶର ଲକ୍ଷ୍ମୀ, ଆଉ ସୁରଭାଇଙ୍କ ବୋଉ !

ସୁର—ବୋଉକୁ ମୁଁ ଅନେକ ଥର କହୁଚ ମୋ ପାଖରେ ରହିବାକୁ ; ହେଲେ ସେ କହେ, ଗାଁ ମାଟି ମୋର ତୀର୍ଥ ।

ପି. ଏ.—( ବାହାରୁ ଡାହାଣ ଦ୍ୱାର ଦେଇ ଆସି ସୁରକୁ ଗୋଟାଏ କାଗଜ slip ବଢ଼ାଇଦେଲେ ଓ ଚାଲିଗଲେ )

ସୁର—ଦେଖୁଛନ୍ତି ମାଉସୀ, ଜଣେ ଲେଖକ ସିରିୟସ୍ ଇଲ୍···ମେଡିକାଲ୍‌ରେ ପଡ଼ିଛନ୍ତି ଯେ କେହି ନାହାନ୍ତି ତାଙ୍କୁ ଦେଖିବାକୁ । ବର୍ତ୍ତମାନ ସତେ ଯାଇ ସବୁ ବ୍ୟବସ୍ଥା କରିବାକୁ ପଡ଼ିବ ।

ମଳୟା—ଚାଲ, ଆମେ ବି ଯିବୁ । ଆମକୁ ଘରେ ଗୋଟାଏ ଲିଫ୍ଟ ଦେଇ ତୁମେ ସେଆଡ଼େ ଯିବ ।

ସୁର—ହେଲେ, ସିନେମା କଥା କ'ଣ ହେବ ?

ମଳୟା— ମତେ ଆଉ ଡାକନା । ଯାଗ୍ ଷେଠ journey କରି ବଡ଼ କ୍ଲାନ୍ତ । ସେଷା ଆଉ ତମେ ଯାଅ, ଫେରି ମତେ ବରଂ storyଟା କହିଦେବ ।

ସୁର—କ'ଣ କହୁଛ, ଶିଖା ?

ଶିଖା—ଏଥିରେ ମୋର ତ କହିବାର ଆଉ କିଛି ନାହିଁ । ମୁଁ ରାଜି । ନ ହେଲେ ବୋଉ ଆଖି ତରାଟିବ, ଆଉ ତମେ ମନ ଖରାପ କରିବ । ହେଲେ, ସଞ୍ଜୟବାବୁ କ'ଣ ଏକା ଘରେ ରହିବେ ?

ସୁର—ମୁଁ ତ ସଞ୍ଜୟ କଥା ଏକାବେଳେକେ ଭୁଲିଯାଇଛି ।

ମଳୟା—ଦେଖ କିରୁ, ଗୋଟାଏ କଥା ତୁମକୁ କହିବି, କିଛି ମନେକରିବନି ।

ସୁର—ଆପଣଙ୍କ କଥା mind କରିବି ! କୁହନ୍ତୁ ।

ମଳୟା—ସେଷା, ତୁ ଏଠୁ ଯା, ଟିକିଏ ବାହାରକୁ ଗଲୁ ।

ଶିଖା—ଯାଉଛି । ପରନିନ୍ଦା, ପରଚର୍ଚ୍ଚା ଶୁଣିବାକୁ ମୋର ମୋଟେ ଇଚ୍ଛା ନାହିଁ କି ଧୈର୍ଯ୍ୟ ମଧ୍ୟ ନାହିଁ ( ଡାହାଣ ପଟେ ବାହାରକୁ ଗଲା )

ମଳୟା—କିରୁ ! ଏ ସଞ୍ଜୟ ତୁମର କିଏ ? ସୋସାଇଟିରେ ତମର ଗୋଟେ ପୋଜିସନ ଅଛି । ବାହାର ଲୋକ ତମକୁ କ'ଣ ଭାବୁଥିବେ, କହିଲ ?

ସୁର—ସଞ୍ଜୟର ଟାଲେଣ୍ଟ ଆପଣ ଜାଣିନାହାନ୍ତି, ମାଉସୀ ! ତାର ଲେଖା ଗୋଟାଏ ଗୋଟାଏ ରତ୍ନ ।

ମଳୟା—ମାନିଲି, ସେ ଗୋଟାଏ ଅସମ୍ଭବ ପ୍ରତିଭା । ତାକୁ ଟଙ୍କାପଇସା ଦେଇ ସାହାଯ୍ୟ କର । ବଡ଼ ବଡ଼ ଲୋକଙ୍କ ସହିତ ପରିଚୟ କରାଅ । କିନ୍ତୁ ନିଜ ଘରେ ଆଣି ରଖିବାଟା...ଆଉ ସେଷା ସହିତ ତା'ର ଏତେଟା ମିଳାମିଶାକୁ ମୁଁ ଆଦୌ ପସନ୍ଦ କରିପାରୁନି ।

ସୁର—ସେଷାକୁ ଏତେ ଶ୍ରେଷ୍ଠ ଆଖିରେ ଦେଖିବେନି, ମାଉସୀ ! ସେ ଶିକ୍ଷିତା, ଆଧୁନିକା । ସ୍ୱାଧୀନ ମନ ନେଇ ସେ ସମସ୍ତଙ୍କ ସାଙ୍ଗରେ ମିଶେ । ସଞ୍ଜୟର ଭଲମନ୍ଦ ବୁଝିବାର ଦାୟିତ୍ୱ ମୁଁ ତାକୁ ଦେଇଛି । ଆପଣ ନିଶ୍ଚିନ୍ତ ଥାଆନ୍ତୁ । ଶିଖା ଆପଣଙ୍କ ଝିଅ । ସେ କେବେହେଲେ ତଳକୁ ଯାଇପାରିବ ନାହିଁ ।

ମଳୟା—ହଉ, ତମ ମନରେ କଷ୍ଟ ଦେବାକୁ ମୁଁ ଚାହୁନ। ହେଲେ, ଯାହା କରୁଛ ବୁଝି ବିଚାର କରୁଥାଅ। ତମେ ତ ଜାଣ, ପାଖ ପଡ଼ୋଶୀ ଲୋକ ଆମକୁ ମୋଟେ ସହିପାରନ୍ତିନ। ଚାକରୀରୁ ରିଟାଏର୍ କରି ସେ ବାହାରିଲେ ତୀର୍ଥ ପର୍ଯ୍ୟଟନରେ। କହିଲ ଦେଖି, ଇଣ୍ଡିଆ ଗଭର୍ଣ୍ଣମେଣ୍ଟର କୋଉ ଡେପୁଟି ସେକ୍ରେଟେରୀ ରିଟାୟର୍ କରି ସଂସାର ଛାଡ଼ି ବାବାଜି ହୋଇ ଚାଲୁଛନ୍ତି! ଅରେ ବାବା, ସନ୍ୟାସୀ ଯେବେ ହବାର କଥା, ତେବେ ସଂସାର କରୁଥିଲ କାହିଁକି? ଏବେ ଘରକୁ ବାହାରକୁ ମୁଁ ଏକା। ଭଲମନ୍ଦ ହେଲେ ଲୋକେ ବାଟ ଚଲେଇ-ଦେବେ?

ସୁର—ଆପଣ ମିଛରେ ଏଣ୍ଡିକେଣ୍ଡି ଚିନ୍ତା କରନ୍ତୁନ। ଚାଲନ୍ତୁ, ମୁଁ ଆପଣଙ୍କୁ ଛାଡ଼ିଦେଇ ହସ୍‌ପିଟାଲ ଯିବି।

[ ସୁର ଓ ମଳୟାଦେବୀ ଡାହାଣ ପାଖ ଦ୍ୱାରଦେଇ ବାହାରକୁ ଚାଲିଗଲେ। ଭିତରୁ ବାମପାଖ ପଛଦ୍ୱାର ଦେଇ ସଞ୍ଜୟ ଖବରକାଗଜ ହାତରେ ଆସିଲା। ଖୁବ୍ କ୍ଳାନ୍ତ ସେ। ଡାକିଲା ଝରକା ପାଖରେ— ]

ସଞ୍ଜୟ—ଅଗଣି!

ଅଗଣି—( ବାମପାଖ ସାମନା ଦୁଆର ଦେଇ ଆସିଲା ) ମତେ ଡାକିଲେ, ବାବୁ?

ସଞ୍ଜୟ—ହଁ, ତତେ।

ଅଗଣି—କ'ଣ, କଫି ଆଣିବି?

ସଞ୍ଜୟ—ନା।

ଅଗଣି—ଜଳଖିଆ?

ସଞ୍ଜୟ—ନା। ମୋର ଯାହା ଦରକାର, ମୁଁ ନିଜେ ମାଗିନେବି। ଯାହା କହୁଛି ଶୁଣ୍। ତୁ ଜାଣୁ, ମୁଁ କାହିଁକି ଏଠିକି ଆସିଛି?

ଅଗଣି—( ହସି ) ତମେ ଆଜ୍ଞା କେତେବଡ଼ ଲେଖକ ବାବୁ। କେତେ କ'ଣ ଗଳ୍ପ, ପୁରାଣ ସବୁ ଲେଖିଛ···ଆଉ ଏଠିକି ଆସିଛ ଆହୁରି କେତେ କ'ଣ ଲେଖିବାପାଇଁ।

ସଞ୍ଜୟ—କନ୍ଟୁ ଅଗଣି !

ଅଗଣି—ଆଜ୍ଞା !

ସଞ୍ଜୟ—ଆସିଲାଦିନୁ ଆଜିଯାଏ ଲେଖିବି ଲେଖିବି ବୋଲି ଗୋଟାଏ ଧାଡ଼ି ବି ମୁଁ ଲେଖିପାରିନି । ଜଣଙ୍କ ପରେ ଜଣେ ଏକାକୁ ସଞ୍ଜୟାଏ ଧାଡ଼ିବାନ୍ଧି ଛୁଟିଛନ୍ତି ; ମତେ ଯେମିତି ମୁଁ ଗୋଟାଏ ଚିଡ଼ିଆଖାନାର ଜନ୍ତୁ । ତତେ ମୁଁ ଅନୁରୋଧ କରୁଛୁ, ମତେ ଟିକିଏ ଶାନ୍ତିରେ ଏକୁଟିଆ ନିଶ୍ୱାସ ମାରିବାକୁ ଦିଅ ।

ଅଗଣି—ଏ'ତ ବଡ଼ଘର କଥା, ବାବୁ ! ଯାହାକୁ ମନା କରିବ ତା ମୁହଁ ଏଡ଼େ । ହେଉ ଦେଖେଁ, କିଛି ଗୋଟାଏ ବ୍ୟବସ୍ଥା ତ କରିବାକୁ ହବ ।

ସଞ୍ଜୟ—ମତେ ଯେମିତି ବିରକ୍ତ କରିବାପାଇଁ କେହି ନ ଆସନ୍ତି, ଅନ୍ତତଃ ଅଳ୍ପ ଦିନଟା ପାଇଁ ।

ଅଗଣି—ହଉ ହେଲା, ଏଇ ଗୋଟାଏ କଥା ତ ? ତମେ ବାବୁ ବସିଲ, ବସ । ଆଜି ମଣିଷ କ'ଣ ହରବ୍ରହ୍ମା କି ଖୋଦ୍ ଭଗବାନ ଆଇଲେ ବି ମୁଁ ତାଙ୍କୁ ପିଆଡ଼େ ପିଆଡ଼େ ବିଦା କରିଦେବି ।

[ ଡାହାଣପାଖ ଦେଇ ବାହାର ଦରଜାରେ ସେ ଖୁଲିଗଲା । ସଞ୍ଜୟ ଲାଇଟ୍ ଲିଭାଇ ସୋଫାରେ ବସିଲା ! କିଛି ସମୟ ପରେ ସଙ୍ଗୀତର ଅସ୍ପଷ୍ଟ ଶବ୍ଦ । ଲାଇଟ୍ କାଳ ସଞ୍ଜୟ ଲେଟିଗୁଲଲା, ଅବଶ୍ରାନ୍ତ ଭାବରେ କିଛି ସମୟ ଯାଏ । ବଗିଚ୍ଚ ଭିତରୁ ଗୋଟାଏ ଲୋକ ଝରକା ଦେଇ ଘରଭିତରକୁ ଆସିଲା । ଧୀରେ ଧୀରେ ଆସି ସଞ୍ଜୟ କାନ୍ଧରେ ହାତ ପକାଇଲା । ]

ସଞ୍ଜୟ—ବିରୂପାକ୍ଷ ! ତୁ ?

ବିରୂପାକ୍ଷ—ହଁ, ସଦର ଗେଟ୍‌ରେ ତ ପ୍ରବେଶ ନିଷେଧ, ତେଣୁ ବାଧ୍ୟ ହୋଇ ଗଛ ଚଢ଼ି, ପାଇପ୍ ଧରି ଉପରକୁ ଆସିବାକୁ ପଡ଼ିଲା ।

ସଞ୍ଜୟ—ଇମିତ ରପ୍‌କ୍ଟ୍ରି ନଉ କାହିଁକି, ବିରୂପାକ୍ଷ ?

ବିରୂପାକ୍ଷ—ଆଜି ନୁହେଁ, ସବୁଦିନେ ନେଇଛୁ···ଆଉ ସବୁଠି କିଣିଛୁ ।

ସଞ୍ଜୟ—ଯଦି ହାତ ଖସିଯାଇଥାନ୍ତା, ପଡ଼ିଯାଇଥାନ୍ତି ? ?

ବିରୂପାକ୍ଷ—ଏ ହାତ ଦି’ଟା ଉପରେ ମୋର ବହୁତ ବିଶ୍ୱାସ, ସଞ୍ଜୟ ! ତୋ ଭଳି କବିତା ଲେଖିବା ହାତ ଏ ତ ନୁହେଁ । ସ୍ୱାଧୀନତା ଆନ୍ଦୋଳନରେ ବିଦେଶୀ ସରକାରର ହାତକଡ଼ିର ମଧୁର ସ୍ପର୍ଶ ପାଇଛି···ଜେଲଭିତରେ ଘଣା ପେଲିବାର ସ୍ୱାଦ ବି ଚାଖିଛି···ଚକି ପେଷିବାର ସାନ୍ନିଧ୍ୟ ବି ଲାଭ କରିଛି । ତା ଛଡ଼ା, ମାଟି ଖୋଳିଛି, କୋଇଲା ଖାଣିଛି ; ଦରକାର ପଡ଼ିଲେ ରିଭଲଭର୍ ବି ଧରିଛି ।

ସଞ୍ଜୟ—ହଉ, ଖୁବ୍ ତ କସରତ କଲୁ । ଟାଏର୍ଡ଼ ହେଇଥିବୁ । ଏଥର ବସ ।

ବିରୂପାକ୍ଷ—ସଞ୍ଜୟ ! ତୋ ପାଇଁ ଏମିତି ନୋ ଆଡ୍‌ମିସନର ବ୍ୟବସ୍ଥା କାହିଁକି କରେ ?

ସଞ୍ଜୟ—ବାଧ୍ୟ ହୋଇ । ସକାଳୁ ସଞ୍ଜଯାଏ ଲୋକ ଛୁଟିଛନ୍ତି । ଖାଲି ଦେଖାଶୁଣା, ଇଣ୍ଟରଭିଉ, ପାର୍ଟି,ଡିନର । I am fed up, reall, I am fed up.

ବିରୂପାକ୍ଷ—ଚମତ୍କାର ! ଏମିତି ହଠାତ୍ ଖ୍ୟାତାଖ୍ୟାତ ବିଖ୍ୟାତ ବନିଯିବାର ସୁଯୋଗ କାହାକୁ ମିଳେ ? ତୋର ତ ଏଥିରେ ଗର୍ବ କରିବାର କଥା । ମୁଁ ଶୁଣିଛି, ସାଧନା କି ସାଇବାବାନୁ ଆସିଲେ ଇମିତି ଭିଡ଼ କରନ୍ତି ।

ସଞ୍ଜୟ—ହଁ, ତତେ ଶୁଣିବାକୁ ମିଠା ଲାଗୁଛି; ହେଲେ ମୁଁ ଯାହା ଭୋଗୁଛି, ମୁଁ ବୁଝୁଛି ।

ବିରୂପାକ୍ଷ—ଆରେ, ଏତିକିବେଳୁ ତ ଏମିତି ହେଲୁଣି, ଆଉ ଯେତେବେଳେ ତୋ କବିତା ନୋବେଲ ପ୍ରାଇଜ୍ ପାଇବ, ସେଦିନ ?

ସଞ୍ଜୟ—ନୋବେଲ ପ୍ରାଇଜ ! ମୋର କ’ଣ ମନେହେଉଛି, ଜାଣୁ ? ଏଇଠି ହବ ମୋ ଲେଖାର ସମାଧି ।

ବିରୂପାକ୍ଷ—ଆରେ ନା, ନା, ସୁରଜିତବାବୁଙ୍କ କଡ଼ା ନଜର ତୋ ଉପରେ ପଡ଼ିଛି । ସେ ତତେ ତଳକୁ ଖସିବାକୁ ଦେବେ ନି ।

ସଞ୍ଜୟ—କିନ୍ତୁ ଭାଇ, ଆସିଲାଦିନୁ ଗୋଟାଏ ଲାଇନ୍ ବି ଲେଖିପାରୁନି, ଜାଣିଛୁ ?

ବିରୂପାକ୍ଷ—ହଁ, ହବା କଥା । କୁଳଦସ୍ତିର ଛ’ଅଣିଆ ମିଲ୍ ତ ଖାଉନୁ ଏଠି, ଯାହା

ତାହା ଲେଖିଦେଲେ ଚଳିବ ! ଏଠିକା ଖାନା ଯେମିତି ଦାମୀ, ଲେଖା ବ ସେମିତି ଦାମୀ ହବା ଦରକାର ।

ସଞ୍ଜୟ—ଉପହାସ କର ନା, ବିରୂପାକ୍ଷ ! ସେଇ କୁଳବସ୍ତିର ଭଙ୍ଗା ଗୃହ, ସାରାଦିନର ଖଟଣୀ···ତେବେ ବି ସନ୍ଧ୍ୟାରେ ଡିବିର ଆଲୁଅ ଜାଳି ମୁଁ ଦୁ'ଧାଡ଼ି ଲେଖି-ପାରୁଥିଲି । ହେଲେ ଏଠି ଅଭାବ ନାହିଁ, ଅସୁବିଧା ନାହିଁ ; ତେବେ ବି ମୋର କେମିତି ଶ୍ୱାସ ରୁଦ୍ଧ ହୋଇଯାଉଛି । ମୁଁ ଏଠୁ ଚାଲିଯିବି ।

ବିରୂପାକ୍ଷ—କୁଆଡ଼େ ? ପୁଣି ସେଇ କୁଳବସ୍ତିକୁ ? ଛି, ଲୋକେ ତତେ କ'ଣ କହିବେ ?

ସଞ୍ଜୟ—ଛାଡ଼ ସେ ବାଜେ କଥା ; ବସ୍ତିର ଖବର କ'ଣ, କହ !

ବିରୂପାକ୍ଷ—ସେସବୁ ନ ଶୁଣିବା ଭଲ ।

ସଞ୍ଜୟ—କାହିଁକି ?

ବିରୂପାକ୍ଷ—ତୋ ମୁଣ୍ଡ ଖରାପ ହୋଇଯିବ, ଡାକ୍ତର ଡକାପଡ଼ିବ । ଆଚ୍ଛା ସଞ୍ଜୟ, ତୋର ଏଠି ଡାକ୍ତର ଅଛନ୍ତି ତ ?

ସଞ୍ଜୟ—ଅଛନ୍ତି । ଏକାବେଳକେ ଜବରଦସ୍ତ । ଦେଖିଲେ, ରୋଗ ତା ମନକୁ ଛାଡ଼ି ପଳାଇବ ।

ବିରୂପାକ୍ଷ—ଜାଣେ । ସୁରଜିତ୍‌ବାବୁ ଯେମିତି ପକା ଲୋକ ଦେଖି ଆପଏଣ୍ଟ କରିଥିବେ ।

ସଞ୍ଜୟ—କେମିତି ଚାଲିଛି, ବିରୂପାକ୍ଷ ?

ବିରୂପାକ୍ଷ—ତୁ ଆସିଲା ପରେ 'ସର୍ବହରା' ପତ୍ରିକା ସତରେ ସର୍ବହରା ହେଇଯାଇଚି । ତୋ ଲେଖାରେ କୁଳବସ୍ତିର ଯେଉଁ ବାସ୍ତବ ଚିତ୍ର ଥିଲା, ସେ ତାକୁ ବଞ୍ଚେଇ ରଖିଥିଲା । ତୁ ତ ଇଆଡ଼େ ଆସିଲୁ । କିଏ ଆଉ ଲେଖିବ ? କୋଉ ଦିନ ସେ ବନ୍ଦ ହେଇଯିବ କହିପାରୁନି ।

ସଞ୍ଜୟ—ମୁଁ ଲେଖିବି ।

ବିରୂପାକ୍ଷ—( ହସି ) ଏଠି ରହି ଡ୍ରଇଂ ରୁମ୍‌ର କବିତା ନଷ୍ଟ ହୋଇପାରେ, ହେଲେ ଭୂଲବସ୍ତିର ନୁହେଁ । ତା ଛଡ଼ା, ସୁରଜିତ୍‌ବାବୁ କ'ଣ ପସନ୍ଦ କରିବେ ?

ସଞ୍ଜୟ—କାହା ପସନ୍ଦରେ ମୋର କିଛି ଯାଏଆସେ ନା !

ସୁର—( ଭିତରୁ ) ଅଗଣି !

ବିରୂପାକ୍ଷ—ସୁରଜିତ୍‌ବାବୁ ବୋଧହୁଏ ?

ସଞ୍ଜୟ—ହଁ ।

ବିରୂପାକ୍ଷ—ମୁଁ ତା'ହେଲେ ଆସେ ଆଜି ।

[ ସଞ୍ଜୟ ଯାଇ ବାଲକୋନୀରେ ଠିଆହେଲା । ବିରୂପାକ୍ଷ ଝରକା ଦେଇ ଚାଲିଗଲା । ସଞ୍ଜୟ ଲାଇଟ୍ ଲିଭାଇଲା । ଘରର ସ୍କ୍ରୀନ୍ ଟାଣିଦେଲା । ]

—ଲାଇଟ୍ ଅଫ୍—

## ତୃତୀୟ ଦୃଶ୍ୟ

[ ଆଜି କେତେଦିନ ପରେ ଗୋଟାଏ ଅପରାହ୍ନ । ଅଗଣି ଘର ସଜାଉଥାଏ, ପଛପାଖ ସ୍କ୍ରୀନ ଆସ୍ତେ ଆସ୍ତେ ଖୋଲିଗଲା ଅଗଣିଦ୍ୱାରା । ଅଗଣି ବାମପାଖ ସାମନା ଦୁଆର ଦେଇ ଚାଲିଗଲା । ବାମପାଖ ପଛ ଦରଜା ଦେଇ ସଞ୍ଜୟ ଆସିଲା । ଚାହିଁରହିଲା ଅନନ୍ତ ଆକାଶକୁ । ଡାହାଣ ପାଖ ଦୁଆରୁ ଆସିଲା ମେଘନାଦ । ]

ମେଘନାଦ—May I come in, Sir ଆପଣ ନିଶ୍ଚୟ ସେ ବିଖ୍ୟାତ ଲେଖକ ସନ୍ତୋଷ ଦାସ ?

ସନ୍ତୋଷ—ଆଜ୍ଞା ନା, ବିଖ୍ୟାତ ନୁହେଁ···ଅଖ୍ୟାତ । ଆଉସବୁ କଥା ଠିକ୍ ।

ମେଘନାଦ—ଆହା, ହା, କି କଥା ! କି ବିନୟ ! କି ନମ୍ରତା ! ଏତେବଡ଼ ଲୋକଙ୍କ ଗର୍ବ, ଅହଙ୍କାର, ଅହମିକା ଟିକେହେଲେ ଅଛି ?

ସନ୍ତୋଷ—ଆପଣ କିଏ ?

ମେଘନାଦ—ମୋତେ ଚିହ୍ନନ୍ତି ନାହିଁ, ଆଜ୍ଞା ? ସଭା ସମିତି, ସିନେମା ଥିଏଟର,, କୁସ୍ତି କସରତ ଆଉ ଆମ ଷ୍ଟାଡ଼ିୟମ···କୋଉଠି ମତେ ଦେଖିନାହାନ୍ତି ? ମୁଁ ହେଉଛି ସାହିତ୍ୟ, କଳା, ଚଳଚ୍ଚିତ୍ର ଆଉ କ୍ରୀଡ଼ାର ବିଖ୍ୟାତ ମାସିକ ପତ୍ରିକା 'ଶିଳ୍ପୀ'ର ନିଜସ୍ୱ ପ୍ରତିନିଧି । ଛଦ୍ମନାମ ହେଲା 'ମେଘନାଦ' । ଆମ ପତ୍ରିକାର ନାମ ତ ଆପଣ ନିଶ୍ଚୟ ଶୁଣିଥିବେ ?

ସନ୍ତୋଷ—ନା, ଶୁଣିନି ।

ମେଘନାଦ—ଆଃ, କି ଖାଣ୍ଟି ଲୋକ ! ଭେଜାଲ ବୋଲି କିଛି ନାହିଁ । ଆଜ୍ଞା, ଏମିତି ସ୍ପଷ୍ଟବାଦୀ ଲୋକ ମୁଁ କେବେ ଦେଖିନି । ମୋର ଏ ଦଶବର୍ଷର ସାମ୍ବାଦିକ ଜୀବନ ଭିତରେ ମୁଁ କୌଣସିଠି ଦେଖିନି । ପଢ଼ିବା ତ ଆପଣଙ୍କର କାମ ନୁହେଁ, ଆପଣଙ୍କ କାମ ହେଲା ଲେଖିବା । ମୁଁ ଆସିଥିଲି, ମାନେ, ଆପଣଙ୍କ ଜୀବନୀଟା···

ସନ୍ତୋଷ—ଜୀବନ ଯାହାର ଆରମ୍ଭ ହୋଇନି, ତା'ଠୁ ନେବେ ଜୀବନୀ ?

ମେଘନାଦ—ଆଃ, ନାଇସ୍ ! ଶସ୍ତୁଲ୍ ଜୀବନ ଦର୍ଶନ । Just a minute. ମୋ ନୋଟ୍‌ବୁକ୍‌ଟା ବାହାର କରେ । ( ନୋଟବହି କାଢ଼ିଥାଇ ) ଏଥର କୁହନ୍ତୁ ଆଜ୍ଞା !

ସନ୍ତୋଷ—କ'ଣ କହିବ ?

ମେଘନାଦ—'ଶିଳ୍ପୀ'ର ପୂଜାସଂଖ୍ୟା ବାହାରୁଛି । ସେଥିରେ ଆପଣଙ୍କ ପରି ବିଶିଷ୍ଟ ଲେଖକ, ନାଟ୍ୟକାର, ଶିଳ୍ପୀ, ସାହିତ୍ୟକମାନଙ୍କ ଜୀବନୀ ପ୍ରକାଶ ପାଇବ ।

ସଞ୍ଜୟ—ଆପଣ ଭୁଲ କରୁଛନ୍ତି । ବ୍ଲୁଲବସ୍ତିର ଓକ୍ସବନ୍, ନୁଆଣିଆ ଗ୍ରାନ୍ଦର, ଖୋଲା ଆକାଶ, ଆଉ ସନ୍ଦସନ୍ଦିଆ ମାଟିର ଦରଦ ନେଇ ଅପଣଙ୍କ 'ଶିଳ୍ପୀ'କୁ ବଜାଇବାଙ୍କ କଣବେ କାହିଁକି ?

ମେଘନାଦ—( ଲେଖୁ ଲେଖୁ ) Once again please. ନୁଆଣିଆ ଗ୍ରାନ୍ଦର, ତା'ପରେ କ'ଣ ହେଲା, ସାର୍ ?

ସଞ୍ଜୟ—ନମସ୍କାର ! ଆପଣ ଏଥର ଆସନ୍ତୁ ।

ମେଘନାଦ—Sentenceଟା ଶେଷ ହେଲାନି, ଆଜ୍ଞା ! ଟିକିଏ କେମିତି ବେଖାପ ଲାଗିଲା, ମାନେ expressionଟା ଠିକ୍...

ସଞ୍ଜୟ—ଆପଣ ବହୁତ ଆଗେଇସାଉଛନ୍ତି, ମେଘନାଦବାବୁ ! ଏବେ ମୋ ଲେଖା ତ ଆରମ୍ଭ କରିନି ।

ମେଘନାଦ—ଠିକ୍ ଅଛି । ଏଥର କରନ୍ତୁ । ଆପଣଙ୍କ ଲେଖା ବାହାରିଲେ ଦୋକାନ-ବଜାରରେ ପାଠକପାଠିକାମାନେ କ୍ୟୁ କରି ଘଣ୍ଟା ଘଣ୍ଟା ଧରି ଠିଆହେବେ । ଫୁଲମାଳ, ଅଭିନନ୍ଦନ...ରାତାରାତି ଆପଣ ଫେମସ୍ ହୋଇଯିବେ । ଆପଣ-ମାନଙ୍କୁ ଲିଫ୍ଟ ଦେବା ତ ଆମର କାମ ।

ସଞ୍ଜୟ—ଆପଣମାନଙ୍କ ଲିଫ୍ଟ ମୁଁ ଭୁଲିପାରିବି ନା ।

ମେଘନାଦ—ଆଜ୍ଞା, ଏ ହେଲା ପ୍ରତ୍ୟେକ ସାମ୍ବାଦିକଙ୍କ କର୍ତ୍ତବ୍ୟ । ଉପରକୁ ଉଠିବା-ପାଇଁ ଗୋଟାଏ ସାହାଯ୍ୟ । ବେଶ୍, ଏଥର ଆପଣଙ୍କର ଗୋଟାଏ ସ୍ନାପ୍...

( ଫଟୋ ଉଠାଇବାକୁ ଗଲାବେଳେ )

ସଞ୍ଜୟ—ଦୟାକରି ଆପଣ ଯାଆନ୍ତୁ ।

ମେଘନାଦ—ଆହା, ଟିକିଏ ଇଆଡ଼େ ଘୁରନ୍ତୁ । One minute. (Pause) ଆପଣ କଷ୍ଟସ୍ୱ ଅଭିନୟ କରନ୍ତୁ । କୁହନ୍ତୁ, ଆପଣଙ୍କ ପ୍ରଥମ ନାଟକ ?

ସଞ୍ଜୟ—ମତେ ବିଶ୍ୱାସ କରନ୍ତୁ, ଅଭିନୟର ପ୍ରଥମ ଅକ୍ଷର ସହିତ ବି ମୋର ପରିଚୟ ନାହିଁ ।

ମେଘନାଦ—ଫାଙ୍କି ଆପଣ ଦେଇପାରିବେନି, ସଞ୍ଜୟବାବୁ ! ଆପଣଙ୍କ ଚାଲି, ଆପଣଙ୍କ କଥାବାର୍ତ୍ତା, ଏକ୍ସପ୍ରେସନ୍···ତା ଛଡ଼ା ମୋ କ୍ୟାମେରା ତ ମିଛ କହିବ ନା ! କହନ୍ତୁ ଆପଣଙ୍କ ହବି···ଖେଳ କସରତ, ନାଟକ ଚଳଚ୍ଚିତ୍ର, ନାଚଗୀତ, କାବ୍ୟକବିତା···

ସଞ୍ଜୟ—Please stop. ଆପଣ ଚାଲିଯାନ୍ତୁ ଏଠୁ ।

ମେଘନାଦ—ମୁଁ କ'ଣ ତେବେ ଭୁଲ ଠିକଣାରେ ପହଞ୍ଚିଛି ? (ନୋଟବହି ଦେଖି) ଠିକ୍ ଅଛି ତ, ଆପଣ ତା'ହେଲେ ଲେଖକ ସଞ୍ଜୟ ଦାସ ନୁହନ୍ତି ?

ସଞ୍ଜୟ—ନା, ନମସ୍କାର ।

ମେଘନାଦ—( ଚାଲି ଯାଉ ଯାଉ ) ନମସ୍କାର ।

[ ବାହାରକୁ ଚାଲିଗଲା ଡାହାଣପାଖ ଦରଜା ଦେଇ । କିଛି ସମୟ ପରେ ସଞ୍ଜୟ ବହିର୍ୟାକରୁ ଖଣ୍ଡେ ବହି ବାହାର କଲା । ଦେଖିଲା କିଛି ସମୟ, ତା'ପରେ ବାହାରକୁ ଚାଲିଗଲା ଡାହାଣପାଖ ଦରଜାଦେଇ । ]

( ପି. ଏ. ଓ ଅଗଣି ଭିତରୁ ବାମପାଖ ସାମନା ଦରଜାରୁ ମଞ୍ଚକୁ ଆସିଲେ ।)

ଅଗଣି—ଆପଣ ତ ବୁଝୁନାହାନ୍ତି ଆଜ୍ଞା ! ଏଥିରେ ମୁଁ କ'ଣ କରିବି ?

ପି. ଏ.—ନା, ଏଇଟା ତମର ଭୁଲ । ଭୁଲ କରିସାରି ପୁଣି ମୁହଁ ଉପରେ ଜବାବ ଦେଉଛ ?

ଅଗଣି—ଆଜ୍ଞା, ସେ ତ ମୋ କଥା ଠିକଏ ହେଲେ ଶୁଣୁନାହାନ୍ତି । ଗ୍ରେଟ ଲୁଆ କଣ ପିଏ ? ସହଜେ ତ ମୁଁ ଚାକରବାକର ଲୋକ, କାହାକୁ କ'ଣ କହିବି, କୁହନ୍ତୁ ?

ପି. ଏ.—କିଛି ନ ହେଲେ ବି ଖାଲି ଖବର ଦେଇପାରନ୍ତ । ସମସ୍ତେ ଖାଲି ଠକିବାକୁ ବସିଛ । ( ଦକ୍ଷିଣ ପାଖ ଦ୍ୱାର ଦେଇ ବାହାରକୁ ଚାଲିଗଲେ )

ଅଗଣି—ହଉ ଆଜ୍ଞା, ଏଥର ସବୁ କଥା କହିବି । ଏଥର ତମର ତାଙ୍କର ବୁଝାବୁଝି ହେଉ ! କାହା ପାଇଁ ମୁଁ କାହିଁକି ଏତେ ଗାଳି ଶୁଣିବି ? ( ସଞ୍ଜୟ ବାହାରୁ ଆସିଛି )

ସଞ୍ଜୟ—କ'ଣ ହେଇଛି ଅଗଣି, କାହାପାଇଁ ତମେ ଏତେ ଗାଳି ଶୁଣୁଛ ?

ଅଗଣି—ତମର ପାଇଁ । ତମେ ତ ବାବୁ, ମାସ ମାସ ହେଲା ରହିଲ ଯେ, ମୋ କାନ ପାଖରେ ଖାଲି ଶାଳା ଶୂଏର, ବଦମାସ, ଆଜି ବେଳେ ବେଳେ ଷ୍ଟୁପିଡ୍, ନନସେନ୍ସ୍··କହୁଛନ୍ତି ଏ କାନ ଦୁ'ଟା ତାବଦା ହୋଇଗଲାଣି ।

ସଞ୍ଜୟ—କାହିଁକି ?

ଅଗଣି—ପଚାରୁନାହାନ୍ତି ଆଜ୍ଞା, ଏଇ ପି. ଏ. ବାବୁଙ୍କୁ ପଚାରନ୍ତୁ···( ଚାହିଁ ଦେଖିଲା ପି. ଏ. ନାହାନ୍ତି ) ଆରେ, ପି. ଏ. ବାବୁ ତ ଚାଲିଗଲେଣି ! ହଉ ଯାଆନ୍ତୁ, ହେଲେ କଥାଟା ଯାଇ ଡାକ୍ତରବାବୁଙ୍କ କାନରେ ତ ପଡ଼ିଯାଇଛି···ଏଥର ସେଇ ବୁଝିବେ ।

ସଞ୍ଜୟ—କ'ଣ ହୋଇଚି ମତେ ଟିକିଏ କହ ।

ଅଗଣି—କ'ଣ ନ ହଉଚି ଏଠି ? ଖାଇଲାବେଳେ ତ ଖାଉନ । ଶୋଇଲାବେଳେ ଶୋଉନ । ଖୋଲା ଛାତ ଉପରେ ବସି ତାରା ଗଣୁଚ । ତମକୁ ସିନା କିଛି ଜଣାଯାଉନ; ହେଲେ ଏ ବୁଢ଼ାଦିନେ ଗାଳିଗୁଡ଼ା ଖାଇ ବାଧୁଚି ।

ସଞ୍ଜୟ—ଆଚ୍ଛା, ଅଗଣି, ମୁଁ ଏଠୁ ଚାଲିଗଲେ ତ ତମକୁ ଆଉ ଗାଳି ଶୁଣିବାକୁ ପଡ଼ିବନି ?

ଅଗଣି—କ'ଣ ହେଲା ! ଏଇ କଥା ପାଇଁ ତମେ ଚାଲିଯିବ, ବାବୁ ?

ସଞ୍ଜୟ—ନା, ଅଗଣି, ମୋର ସବୁବେଳେ ମନେହେଉଛି ଯେ, ମୁଁ ଗୋଟାଏ ଛୋଟ ପୋଖରୀର ମାଛ; ଭୁଲରେ ହୁଏତ ସମୁଦ୍ର ଭିତରକୁ ଡେଇଁପଡ଼ିଚି । ଏଇ କୁଆର ଆଉ ଲୁଣି ପାଣିରେ ମୁଁ ବଞ୍ଚିପାରିବନି ।

ଡାକ୍ତର—( ବାହାରୁ ଆସିଲେ ) କିଏ କହୁଛି ତୁମେ ବଞ୍ଚିବ ନାହିଁ ? ଅଲବତ୍ ବଞ୍ଚିବ । ମୋ ପରି ଜଣେ ସ୍ପେସିଆଲିଷ୍ଟ ଡକ୍ଟର ଏଠି ଥାଉ ଥାଉ ତୁମେ କହୁଚ ବଞ୍ଚିବ ନି ?

ସଞ୍ଜୟ—ଆପଣ ଏଠି କାହିଁକି ?

ଡାକ୍ତର—ତୁମକୁ ଦେଖିବାକୁ ।

ସଞ୍ଜୟ—ଆପଣଙ୍କୁ ତ କିଛି ଖବର ଦିଆଯାଇନାହିଁ ।

ଡାକ୍ତର—ମୁଁ ଜନ୍ତୁ ଖବର ପାଇ ଆସିଛି, ସଞ୍ଜୟ !

ସଞ୍ଜୟ—କ'ଣ ଖବର ପାଇଛନ୍ତି ?

ଡାକ୍ତର—ତୁମର ଦେହ ଭଲ ନାହିଁ ।

ସଞ୍ଜୟ—ନା, ମୋର କିଛି ହୋଇନି ।

ଡାକ୍ତର—ମିଛକଥା । ମୁଁ ତୁମ ମୁହଁ ଦେଖି ରୋଗ ଚହ୍ନିପାରୁଛି । ସତ କୁହ, କାଲି ରାତିରେ ବାହାରକୁ ଯାଇଥିଲ ?

ସଞ୍ଜୟ—ହଁ ।

ଡାକ୍ତର—ବାହାରୁ କ'ଣ ଖାଇଛ ?

ସଞ୍ଜୟ—ବରା, ପକୁଡ଼ି, ଗୁଲୁଗୁଲା ଆଉ ବାରମଜା···

ଡାକ୍ତର—ହଁ, ଠିକ୍ ବୁଝିପାରୁଛି । ଅଚ୍ଛା, ଗାଧୋଇଥିଲ କେଉଁଠି ?

ସଞ୍ଜୟ—ମାନସରୋବରରେ ।

ଡାକ୍ତର—ମାନେ ?

ସଞ୍ଜୟ—ମନ ଯେଉଁଠି ହେଲା ।

ଡାକ୍ତର—ହଁ, ଏଇଥିପାଇଁ ସବୁ କରୁଛ ! ତମକୁ ବର୍ତ୍ତମାନ ନର୍ସିଂହୋମକୁ ନେଇଯିବ ।

ସଞ୍ଜୟ—କାହିଁକି ?

ଡାକ୍ତର—ଏଠି ତୁମର ଚିକିତ୍ସା ହୋଇପାରିବ ନାହିଁ ।

ଅଗଣି—ହଁ ଆଜ୍ଞା, ଠିକ୍ କଥା, ତାଙ୍କୁ ନେଇଯାଆନ୍ତୁ ।

ଡାକ୍ତର—ତୁ ଯା, ଚୌଧୁରୀବାବୁଙ୍କୁ କହିବୁ, ମୁଁ ସେଇ ବ୍ୟବସ୍ଥା କରୁଛି । ( ଡାକ୍ତର ବାହାରକୁ ଚାଲିଗଲେ ଦକ୍ଷିଣ ଦ୍ୱାର ଦେଇ । )

ଅଗଣି—ଠିକ୍ ହେଲା ଏଥର । (ବାମ ଆଡ଼କୁ ଗଲାବେଳେ)

ସଞ୍ଜୟ—ମୁଁ ଡାକ୍ତରଖାନା ଯିବ ନ, ଅଗଣି ! ଏଠି ବାହ୍ନ ତ ଯାହା ଅବସ୍ଥା ହେଲଣି, ସେଠିକି ଗଲେ···ମୁଁ ପାରିବନ ।

( ଅଗଣି ବାମପାଖ ଭିତର ଦୁଆରବାଟେ ଚାଲିଗଲା । )

ସୁର—( ବାମପାଖ ସାମନା ଦ୍ୱାର ଦେଇ ଆସିଛୁ । ) ମୁଁ ତୁମକୁ ଗୋଟାଏ ଦାୟିତ୍ୱ ଦେବାକୁ ଚାହେଁ । ତମେ ପାରିବ ସଞ୍ଜୟ ?

ସଞ୍ଜୟ—ଚେଷ୍ଟା କରିବ ।

ସୁର—Coward ! ଆରେ ଚେଷ୍ଟା କରିବ କ'ଣ ? Straight କହ ପାରିବ କି ନା ? You are expected to be bold. ଶୁଣ, ମୁଁ ଭାବୁଛି ଗୋଟାଏ Daily paper ପବ୍ଲିଶ୍ କରିବାପାଇଁ ।

ସଞ୍ଜୟ—ଡେଲି ପେପର ?

ସୁର—ହଁ, ଆଜିକାଲି Paper ଟାଏ ହାତରେ ରଖିବା ନିହାତି ଦରକାର । ଆଉ ତାର ଏଡିଟର ଦାୟିତ୍ୱ ମୁଁ ତୁମକୁ ଦେବାକୁ ଚାହେଁ ।

ମଳୟା—(ପଶିଆସି) ଆରେ ସୁର, ତମେ ଏଠି !

ସୁର—ହଁ, ଆସନ୍ତୁ ମାଉସୀ ! ଗୋଟାଏ ପ୍ଲାନକୁ କେମିତି execute କରୁଛି, ଶୁଣିବେ ।

ମଳୟା—ସେଇ ଡେଲି ପେପର କଥା ତ ?

ସୁର—ହଁ, ପେପର ଆଉ Editor ଠିକ୍ କରିସାରିଛି । ସେଥିପାଇଁ ସଞ୍ଜୟକୁ ଆପଣ ଶୁଭେଚ୍ଛା ଜଣେଇପାରନ୍ତି ।

ମଳୟା—ଏ କ'ଣ କହୁଚ, ସୁର ? ସଞ୍ଜୟ ତ ମୋର ପୁଅ । ଶୁଭେଚ୍ଛା କାହିଁକି, ଆଶୀର୍ବାଦ ତାକୁ ମୁଁ କରିବ । ଏ ଗୋଟାଏ ବଡ଼ ଦାୟିତ୍ୱ, ଗୋଟାଏ ବଡ଼ ଗୌରବ । ହେଲେ, ମୋର ବିଶ୍ୱାସ, ତୁମେ ନିଶ୍ଚୟ ପାରିବ ।

ପି.ଏ.—( ଭିତରୁ ଆସିଲେ ) ଆଜ୍ଞା, କ୍ଷମା କରିବେ ! ଆପଣଙ୍କର engagement ଆଧୁନିକ ସାହିତ୍ୟ ଉପରେ ଆକାଶବାଣୀ ତରଫରୁ ଗୋଟାଏ ଆଲୋଚନା-ଚକ୍ରରେ ଯୋଗଦେବା ।

ସୁର—ଯାଅ ଯନ୍ତ୍ରଯୁ, ତେଶ କରନ । Be Punctual, stick to your daily engagements. ( ପି. ଏ. ବାହାରକୁ ଓ ଯନ୍ତ୍ରଯୁ ଭିତରକୁ ଚାଲିଗଲେ )

ମଳୟା—ତୁମେ ଭୁଲ କରୁଚ, ସୁର !

ସୁର—ଆପଣ ଜାଣିନାହାନ୍ତି, ମାଉସୀ ' ଯନ୍ତ୍ରଯୁ ପଦ୍ଧ କାଗଜର ସମ୍ପାଦକ ହୁଏ ମୋର କ'ଣ ସେଥିରେ କିଛି ଲାଭ ହବନ ?

ମଳୟା—ଠିକ୍ ଅଛି । ଲାଭକ୍ଷତ ତୁମେ ବୁଝ, ସୁର ! ମୋର କିନ୍ତୁ ଡର, ଲାଭ କରିବାକୁ ଯାଇ ତୁମେ ଯେମିତ କ୍ଷତରେ ନ ପଡ଼ ।

(ଶିଖା ବାହାରୁ ଡାହାଣପାଖୁ ଆସି )

ଶିଖା—ବୋଉ, ତୋର ପତ୍ନି ସିଆଡ଼େ କ'ଣ ମିଟିଂ ଅଛି ?

ସୁର—ବାଃ, ଶିଖା ଅଜିକାଲ ଆପଣଙ୍କ ବିଷୟରେ ଅନେକ ଖବର ରଖୁଚ ତା'ହେଲେ !

ଶିଖା—ନା, କାନ୍ଥବାଡ଼ରେ ପୋଷ୍ଟର ମରାହେଇଚ—ଅଶ୍ଳୀଳ ସିନେମାବିରୋଧୀ ସଭାରେ ଆଜିକାର ବକ୍ତା ନାରୀ କବି ମଳୟା ଦେବୀ ।

ମଳୟା—ହଁ, ସେଇଥିପାଇଁ ମୁଁ ଆସିଥିଲି ସୁରକୁ ସେଠିକି ଡାକନେଇଯିବାକୁ ।

ଶିଖା—ସୁରଭାଇ ସେଠିକି କାହିଁକି ଯିବେ ?

ମଳୟା—ସିଏ ତ ସେଠିକାର ଉଦ୍ୟୋକ୍ତା ।

ଶିଖା—ଓ, ଆପଣ ତା'ହେଲେ ଉଦ୍ୟୋକ୍ତା ! ହେଲେ, ବୋଉ ନାଁଟା ପେପର୍‌ରେ, ପୋଷ୍ଟରରେ···ଆଉ କ'ଣ ଲୋକେ ଆସିବେ ?

ମଳୟା—ତୁ କ'ଣ ଏଠିକି ଆସିଚୁ ମତେ ଜଳେଇବାକୁ ?

ସୁର—ଶିଖା କଥା ଆପଣ କାହିଁକି ଶୁଣୁଛନ୍ତି, ମାଉସୀ !

ମଳୟା—ନା ନା, ଦିନକୁ ଦିନ ତାର ମୁହଁ ବଢ଼ିଯାଉଚ । ତମେ ଚାଲିଲ ସୁର, ଆମେ ଏଠୁ ଚାଲିଯିବା । ନ ହେଲେ ଯେ ମୋ ମାଇଣ୍ଡଟାକୁ ଏମିତ ଖରାପ କରିଦେବ ଯେ ସେଠି ଆଉ କିଛି କହିହବନ । ଆସ !

ଶିଖା—ଆଚ୍ଛା, ବୋଉ, ତୁ ତ ସବୁବେଳେ English Film ଦେଖିବା ଲୋକ ।
ତୁ ଗୋଟାଏ କ'ଣ ଆମ ଦେଶୀ ଛବି ଉପରେ କମେଣ୍ଟ କରିବୁ ?

ମଳୟା—କ'ଣ ହେଲା ? ମୁଁ ତୁମ ହିନ୍ଦି ଛବି ବିଷୟରେ କ'ଣ କିଛି ଜାଣିନି ?
ଏଇତ ସେ ଦିନ କଣ ସେ ଛବିଟା ସୁର...ହଁ, ସଙ୍ଗମ, ଦାସ୍, ଯାହା ହେଉଛି
...ଛି...ଛି ମଣିଷ ପୁଣି ତାକୁ ଦେଖିବ ? ବୁଝିଲୁ, ତା'ପରଠୁ ହିନ୍ଦି ଛବି...

ଶିଖା—ନଶାଟା ଖୁବ୍ ଜୋରରେ ଚଢ଼ିଯାଇଛି ।

ମଳୟା—ମୁଁ ଯାଉଛି, ସୁର !

ଶିଖା—ଆଲୋ ରହ, ଟିକିଏ ଗାଡ଼ିଟା ବାହାରୁ ।

ସୁର—ଚାଲ ମାଉସୀ, କ'ଣ ପାଇବ ତା'କଥାରୁ ? (ସୁର ଓ ମଳୟା ଡାହାଣ
ପଟେ ବାହାରକୁ ଚାଲିଗଲେ ।)

(ସଞ୍ଜୟ ଭିତରୁ ଆସିଛି)

ଶିଖା—କ'ଣ, ସଞ୍ଜୟବାବୁ ? ଆଜି ମୁଡ୍‌ରେ ଅଛନ୍ତି ?

ସଞ୍ଜୟ—କାହିଁକି ?

ଶିଖା—ଏଇ କୁଆଡ଼େ ଟିକିଏ ବୁଲିଯାଇଥାନ୍ତେ ।

ସଞ୍ଜୟ—କାହିଁକି ? ନିତି ନିତି ଯେ ମୋତେ ଘର ଏମିତି ବୁଲିବ, ଘର କ'ଣ
ମାନେ ଅଛି ?

ଶିଖା—ନା, ଠିକ୍ ତା ନୁହେଁ । ସମସ୍ତେ ଇଆଡ଼େ ସିଆଡ଼େ ଯାଉଚନ୍ତି । ଆପଣ ଏକା
ବସି ରହି କରିବେ କ'ଣ ?

ସଞ୍ଜୟ—କିଏ କୁଆଡ଼େ ଗଲା ?

ଶିଖା—ବୋଉ ଗଲା ଅଶ୍ଳୀଳ ସିନେମାବିରୋଧୀ ସଭାରେ ସଭାପତି ହେବାକୁ, ଆଉ
ସୁରଜିତ୍ ବାବୁ ଗଲେ ପଇସା ଦେଇ ଲୋକ ଯୋଗାଡ଼ କରିବାକୁ । ଆମେ
ଆଉ ଏଠି ବସିବା କାହିଁକି ? ଚାଲନ୍ତୁ ନା ବାହାରୁ କୁଆଡ଼େ ଟିକିଏ ବୁଲିଆସିବା ।

ସଞ୍ଜୟ—ମୁଁ କୁଆଡ଼େ ଯିବି ନି ।

ଶିଖା—କୁଆଡ଼େ ? କାଠଯୋଡ଼ି, ଗୋରାକବର, ନ ହେଲେ ନନ୍ଦନ କାନନ ।

ସଞ୍ଜୟ — କ୍ଷମା କରବ । ମୁଁ ଯିବନ ।

ଶିଖା — ଠିକ୍ ଅଛ । ( କଛି ସମୟ ପରେ ) ଅଚ୍ଛା, ସଞ୍ଜୟବାବୁ ! ଆଉ ଗୋଟାଏ ବଢ଼ିଆ ଇଣ୍ଟରେଷ୍ଟିଂ ଜାଗା ଅଛି, ଯିବେ ? ସହରତଳି ସେଇ କୁଲବର୍ଣ୍ଣି···ସେଠି ବେଆଇନରେ ଗଜିଉଠିଥିବା ଶ୍ରମିକ ବସ୍ତିକୁ ଆଜି ଭାଙ୍ଗି ଦଆଯିବ ବୁଲ୍-ଡୋଜରରେ । ସରକାରଙ୍କ ପକ୍ଷରୁ ସେମାନଙ୍କ ନାଁରେ case କରାଯାଇଥିଲା; ସେ ଜାଗା ଆଜି ଦଖଲ କରାଯାଉଛି ।

ସଞ୍ଜୟ—ନା, ମୁଁ ଯିବନ ।

ଶିଖା —ସେ ଭଙ୍ଗା ଘର, ଧୂଆଁ, ଚତ୍କାର, ହାହାକାର, ଲୁହ, ଲହୁ ସବୁରେ ଭାରି ଭଲ ଲବେ ମୋତେ ଦେଖିବାକୁ । ଆପଣଙ୍କ companyଟା ହୋଇଥିଲେ ଖୁବ୍ ଭଲ ହୋଇଥାନ୍ତା । ଆସୁଛି । ( ଶିଖା ଚାଲିଯାଇଚ ଡାହାଣପାଖଦେଇ )

ସଞ୍ଜୟ—[ ଝରକା ପାଖରେ ଠିଆ ହେଲ । ଖୋଲ ଝରକାଦେଇ ଦେଖାଗଲ ଧୂଆଁ । ବୁଲ୍‌ଡୋଜର ଶବ୍ଦ ଶୁଭିଲ କ୍ରମଶଃ । ଇନ୍‌କିଲାବ୍ ଜିନ୍ଦାବାଦ ପାଟି ଶୁଭିଲ···ଖୁବ୍ ଜୋରରେ । ବ୍ୟସ୍ତ ହୋଇଉଠିଲ ସଞ୍ଜୟ । ସ୍କ୍ରୀନ୍ ଟାଣିଦେଲ । ]

ପି. ଏ.—(ବାହାରୁ) ଆପଣ ରେଡ଼ିଓ ଷ୍ଟେସନ ସାହିତ୍ୟ ଆଲୋଚନା ଚକ୍ରକୁ ଯିବା ପ୍ରୋଗ୍ରାମ କ୍ୟାନସେଲ୍ କରିଥିବାରୁ ସେମାନେ ବିଶେଷ ଦୁଃଖିତ ବୋଲି ring କରିଥିଲେ । ବର୍ତ୍ତମାନ ଆପଣଙ୍କର ଯେମିତି କିଛି engagement ନାହିଁ । ଆଜିକାର last engagement ହେଉଛି night show. ସୁରଜିତ୍‌ବାବୁଙ୍କର ଅନୁରୋଧ, ଆପଣ ଯେଇଟା mis କରିବେନି ।

[ ପି. ଏ. ଚାଲିଗଲେ ବାମପାଖ ସାମନା ଦୁଆର ଦେଇ ସଞ୍ଜୟ ଆସି ବସିବାକୁ ଗଲାବେଳେ ବାହାରେ ଖଟ୍ ଖଟ୍ ଶୁଭିଛି । ସଞ୍ଜୟ କବାଟ ପାଖକୁ ଚାଲିବେଳେ ଆସିଛି ବିରୂପାକ୍ଷ···ବାହାରୁ ]

ସଞ୍ଜୟ — କିଏ ?

ବିରୂପାକ୍ଷ—ମୁଁ ବିରୂପାକ୍ଷ । ଲାଇଟ୍‌ଟା ବନ୍ଦ କର ନା ।

ସଞ୍ଜୟ—କ'ଣ ହେଇଛନ୍ତି ?

ବିରୂପାକ୍ଷ—ପୋଲିସ ।

ସଞ୍ଜୟ—କାହିଁକି ?

ବିରୂପାକ୍ଷ—ନିଆଁ, ଲାଠି, ଟିଅରଗ୍ୟାସ, ବୁଲେଟ୍‌ରେ ଆମ ବସ୍ତିଟାକୁ ଧ୍ୱଂସ କରିଦେଇଛନ୍ତି ସେମାନେ । ସହରସାରା ଲୋକ ଯାଇ ସେଠାରେ; ଅଉ ମୁ ଟିକିଏ ଯାଇପାରିଲି ନାହିଁ !

ସଞ୍ଜୟ—ସେଠି ଯାଇ ମୁଁ କ'ଣ କରିଥାନ୍ତି, ବିରୂପାକ୍ଷ ?

ବିରୂପାକ୍ଷ—ଦେଖିଥାନ୍ତ, ଏ ଦେଶର କାନୁନ କେମିତି ଚାଲିଛି ।

ସଞ୍ଜୟ—ବିରୂପାକ୍ଷ !

ବିରୂପାକ୍ଷ—ହଁ, ଶ୍ରମିକମାନଙ୍କୁ ଯେଉଁ ମାଲିକ ଘର ଯୋଗାଇ ନ ପାରେ, ତା ପାଇଁ ଏ ଦେଶରେ କାନୁନ ନାହିଁ । ଅଛି ସେଇମାନଙ୍କ ପାଇଁ, ଯେଉଁମାନେ ଦିନସାରା ଖଟି ଖଟି ମୁଣ୍ଡ ଗୁଞ୍ଜିବାକୁ ଜାଗା ଟିକିଏ ନ ପାଇ, ବାହାରେ ଖୋଲା ଆସମାନ୍ ତଳେ ଖଣ୍ଡେ ଖଣ୍ଡେ ଘର ମାରିଥାନ୍ତି । ଏ ହେଲା ସେମାନଙ୍କର ଦୋଷ । ଆଉ ସେଇଥିପାଇଁ ଆଜି ସେମାନଙ୍କ ଉପରେ ଚାଲିଛି ଅମାନୁଷିକ ଅତ୍ୟାଚାର ।

ସଞ୍ଜୟ—ବିରୂପାକ୍ଷ ! ! !

ବିରୂପାକ୍ଷ—ଘର ଭାଙ୍ଗି ଦିଆଯାଇଚି । ଚାଳରେ ନିଆଁ ଲଗେଇଦିଆହେଇଚି । ଗୋଟା ଗୋଟା ସ୍ତ୍ରୀ ପିଲାମାନଙ୍କୁ ଘରୁ ଟାଣିଆଣି ଫିଙ୍ଗି ଦିଆଯାଇଚି ବଡ଼ ରାସ୍ତା ଉପରକୁ । ଆଉ ଯିଏ ମୁହଁ ଖୋଲିଚି ତା ଉପରେ ଚାଲିଚି ଲାଠି, ଟିଅରଗ୍ୟାସ, ବୁଲେଟ୍ ।

ସଞ୍ଜୟ—ବନ୍ଦକର ଭାଇ !

ବିରୂପାକ୍ଷ—କାହିଁକି ? ଏଇ ହେଲା ସବୁ କାନୁନ ! ଚାଲିଯାଇଛି ବିଦେଶୀ ସରକାର । ରଖିଦେଇଯାଇଛି ବ୍ୟୁରୋକ୍ରେସି, ଲାଠି, ଗୁଳି, ପୋଲିସ । ସବୁ

ଅନ୍ଥ ମାଲିକର ସ୍ୱାର୍ଥ ରକ୍ଷା ପାଇଁ, ଅଉ ଶ୍ରମିକର ଭଙ୍ଗା ଗୃଳ ଉପରେ ବୁଲ୍‌ଡୋଜର ଚଳେଇବା ପାଇଁ ।

( ବାହାରେ ଖଟ୍‌ଖଟ୍ ଶବ୍ଦ ହେଲ )

ସଞ୍ଜୟ—ବିରୂପାକ୍ଷ ! ! !

ବିରୂପାକ୍ଷ—କଣ ହେଲ ? ତୁ ଭୟ କରୁଛୁ, ମୁଁ ଏଠିକି ଆସିଛି ବୋଲି ?

ସଞ୍ଜୟ—ହଁ, ପୋଲିସ ଯଦି ଖବର ପାଏ ?

ବିରୂପାକ୍ଷ—ଆତ୍ମରକ୍ଷା ପାଇଁ ମୁଁ ପ୍ରସ୍ତୁତ ହୋଇ ଆସିଛି । (ପିସ୍ତଲ ଦେଖାଇଲା) ଆଜି ରାତିଟା ମୁଁ ଏଇଠି ରହିଯିବି ।

ସଞ୍ଜୟ—ତୁ ଏଇଠି ରହିବୁ ?

ବିରୂପାକ୍ଷ—ହଁ, ଏଇ ଜାଗାଟା ମୋ ପାଇଁ ସବୁଠୁ ନିରାପଦ ।

ସଞ୍ଜୟ—ବିରୂପାକ୍ଷ ! ! !

ବିରୂପାକ୍ଷ—ଆଜି ଆଉ ସିଙ୍ଗଲ୍‌ସ୍ କପ୍ ଟି ନୁହେଁ ଭାଇ, ଓଭାଲ୍‌ଟିନ୍, କଫି, କୋକୋ ···ଯାହା ଦେବୁ ସବୁ ଖାଇଦେବି । ରାତି ପାଇଁ heavy dinner ବ୍ୟବସ୍ଥା ତ ନିଶ୍ଚୟ କରିବୁ ।

ସଞ୍ଜୟ—ତୁ ଭୁଲିଯାଉଛୁ, ଏଇଟା ମୋ ଘର ନୁହେଁ, ସୁରେନ୍ଦ୍ର ଚୌଧୁରୀଙ୍କ ଘର !

ବିରୂପାକ୍ଷ—ଜାଣେ; ସେଥିପାଇଁ ଏଇ ଜାଗାଟାକୁ ଗୃଲିଆସିଲି । ଆଜି ରାତିଟା ଶୋଇବା ମୋର ନିହାତି ଦରକାର ଭାଇ ! ଗତ ୭ଦିନ ଧରି ଯାହା ଖଟଣୀ ! ( ଶୋଇପଡ଼ିବାକୁ ଗଲା । )

ସଞ୍ଜୟ—ଏଠୁ ତତେ ଗୃଲିଯିବାକୁ ହେବ ।

ବିରୂପାକ୍ଷ—ଦେଖିବୁ, କାଲି ସକାଳୁ ମୁଁ ଗୃଲିଯିବି ମୋ ବାଟରେ ।

ସଞ୍ଜୟ—ନା, ବର୍ତ୍ତମାନ ତୁ ଯା । ଗୋଟାଏ ଫାଙ୍କା ଆଦର୍ଶର ଦୋହାଇ ଦେଇ ମୋର ଆଶା, ଆକାଂକ୍ଷାକୁ ଧୂଳିରେ ମିଶାଇଦେଇ ପାରିବିନି ।

ବିରୂପାକ୍ଷ—ସଞ୍ଜୟ ! ତୁ ଏ କଥା କହିପାରୁଚୁ ? ଯେତେବେଳେ ଆମର ସାଙ୍ଗରେ କାନ୍ଧକୁ କାନ୍ଧ ମିଳାଇ, ସୁଖଦୁଃଖରେ ଭାଗୀ ହୋଇ, ସଞ୍ଜରେ ଫେରିଆସୁଥିଲୁ ସେଇ ଭଙ୍ଗା କୁଡ଼ିଆ ଭିତରକୁ···ଯେ ଦିନର ସେ ଭୋକଉପାସ, ଅଭାବ ଅସୁବିଧା, ବିଦ୍ରୋହ, ବିପ୍ଳବ···ତୋର କ'ଣ କିଛି ମନେପଡ଼ୁନି ? ବୁଢ଼ା ପାଣ୍ଡୁ ପଧାନ କାମ କରୁ କରୁ ମେସିନ୍ ଭିତରେ ଚେପିହୋଇ ଯେଉଁଦିନ ମରିଗଲା, ତା ସ୍ତ୍ରୀ କ୍ଷତିପୂରଣ ଦାବୀ କରି ମ୍ୟାନେଜରର କ୍ୱାଟରରୁ ଯେଉଁଦିନ ଖାଲି ହାତରେ ଫେରିଆସିଲା, ତୁ ନା ସେଇ ସଞ୍ଜୟ, ଏକା ଏକା ଦୌଡ଼ିଯାଇଥିଲୁ ମ୍ୟାନେଜରର ବଙ୍ଗଳାକୁ, ଆଉ ତା'ର ଲୋଡେଡ୍ ରିଭଲଭର ଆଗରେ ଛାତି ଦେଖାଇ କହିଥିଲୁ— Shoot me if you can. କିନ୍ତୁ ପାଣ୍ଡୁ ପଧାନର ସ୍ତ୍ରୀର ଦାବୀ ତୁମକୁ ପୂରଣ କରିବାକୁ ହେବ । ତୁ ନା ସେଇ···

ସଞ୍ଜୟ—ହଁ, ବିରୂପାକ୍ଷ, ମୁଁ ସେଇ ସଞ୍ଜୟ । ହେଲେ, ଆଜି ତୁ ଏଠୁ ଚାଲିଯା ।

ବିରୂପାକ୍ଷ—ମୁଁ ଚାଲିଯାଉଛି, ଭାଇ ! ପଛରେ ମୃତ୍ୟୁର ପରୱାନା ନେଇ ଗୋଟାଏ ରାତିର ଆଶ୍ରୟ ପାଇଁ ଆସିଥିଲି । ତୁ ମତେ ଏଇତକ ଦେଇପାରିଲୁ ନାହିଁ ? ହଉ, best of luck.

[ ଝରକା ଡେଇଁ ଚାଲିଗଲା ବିରୂପାକ୍ଷ, ଶିଖା ଡାକ୍ତରଖାନାରୁ ଆସିଛି ସମସ୍ତଙ୍କ ଅଜଣାରେ । ]

ସଞ୍ଜୟ—ବିରୂପାକ୍ଷ !

ଶିଖା—ଚାଲିଗଲେଣି ।

ସଞ୍ଜୟ—କିଏ ?

ଶିଖା—ଆପଣଙ୍କର ବନ୍ଧୁ ।

ସଞ୍ଜୟ—ସବୁ ଶୁଣିଛ ତା'ହେଲେ ?

ଶିଖା—ଆରମ୍ଭରୁ ନୁହେଁ । ତଥାପି ଦରକାରୀ କଥା କେତୋଟା ଶୁଣିଛି ।

ସଞ୍ଜୟ— ଓଃ, ଶିଖା ଦେବୀ !

ଶିଖା—କ'ଣ ହେଲା, ସଞ୍ଜୟବାବୁ ? ( Pause···ଗାଡ଼ି ଛୁଟିବାର ସୂଚନା )

ସନ୍ତୋଷ—ଶିଖା ଦେବୀ ! ମତେ ଟିକିଏ ସାହାଯ୍ୟ କରିପାରିବ ?

ଶିଖା—ମୁଁ ତ ଭାବୁଥିଲି, ଆପଣଙ୍କୁ···ମୁଁ ସାହାଯ୍ୟ ମାଗିଥାନ୍ତି ।

ସନ୍ତୋଷ—ପରିହାସ ନୁହେଁ, ଆସ !

ଶିଖା—କୁଆଡ଼େ ?

ସନ୍ତୋଷ—Rome ! Holidays in Rome.

[ ଶିଖାର ହାତ ଧରି ନେଇଗଲା ଡାହାଣ ପଥ ଦେଇ । ଅଗଣି ଆସି ଘର ସଜାଡୁଥାଏ । ଡାହାଣପାଖ ସାମନା ଦୁଆର ବାଟେ ଆସିଲେ ଝିଅ ଅମୀନା । ଓ ଆବ୍‌ବାଜାନ୍ । ]

ଅଗଣି—ଆସ ମିଆଁ, ତମ ପୁଅ ତ ଏଇଠି ଅଛନ୍ତି; ତୁମର ଭାବନା କ'ଣ ? କାଗା ତ ତମକୁ ଏଇଠି ଦଆସିବ । ଆ ଝିଅ, ଭିତରକୁ ଆ । ଲାଜ କରୁଛୁ ଏତେ କ'ଣ ?

ଆବ୍‌ବାଜାନ—ମେରା ବେଟା ଇହାଁ ରହତା ହୈ ?

ଅଗଣି—ହଁ, ଏଇଠି । ତମେ ବ୍ୟସ୍ତ ହୁଅନା । ବସିପଡ଼ ଟିକେ, ଥକ୍‌କା ମାର । ଦେ' ମା ! ସେ ପୁଡ଼ାଟା ମତେ ଦେ, ମୁଁ ରଖିଦିଏଁ ।

ଆବ୍‌ବାଜାନ୍—ଦେଖ୍ ବେଟୀ, ଦେଖ୍ ! ମେରା ବେଟା, କସ ତରହ ଆରାମସେ ରହତା ହୈ ! ମେରା କସମତ୍‌ୱାଲା ବେଟା । କୈସେ ବେହେର୍ଦିନ୍ ଘର୍‌ମେ ଅମୀରୌଁ କ ମାଫି ରହତା ହୈ ଅବ୍ ମୁଝେ କସ୍ ବାତ୍‌କ ପରୱା ହୈ ? ଘରମେଁ ଭଟକ୍‌ନେକ ଜରୁରତ୍ ନେହିଁ । ଅଉର ଦରଜତ୍ କ ନୀଚେ କନ୍ଦେଗୀଭର ରହେ ନାହିଁ ପଡ଼େଗା । ଖୁଦାକ ମେହେର୍‌ବାନୀସେ ହମ୍ ଲୋଗ୍‌କୋ ଲମ୍ବେ ଇହାଁ କାଫି କାଏଗା ହୈ ।

ଅଗଣି—ଖିଆପିଆ ତ ହେଇ ନ ଥିବ, ମିଆଁ ! ଝିଅଟାର ମୁହଁ ତ ଶୁଖି କଳାକାଠ ହେଇଗଲାଣି । ମୁଁ ଟିକିଏ ତମର ଖାଇବା ଠିକଣା କରେଁ ।

ଆବ୍‌ବାଜାନ୍—ଅଭି ମୁଝେ ବିଲ୍‌କୁଲ୍ ଭୂଖ୍ ନେହିଁ । କ୍ୟୁଁ କ ଇସ ଘରମେ ଦାଖଲ ହୋନେକେ ସାଥ ଖୁସିକେ ମେରା ତୋ ପେଟ୍ ହି ଭର୍‌ଗୟା । ବାଦ୍ ମେ ଜରୁରତ୍ ହୁଇ ତୋ···ଘର୍ ଅପ୍‌ନାହିଁ ହୈ ।

ଅମୀନା—ନା, ଚଚ୍ଚା ! ଅମ ଘାଇଁ ତମେ କାହିଁକି ତକଲିଫ୍ ନେବ ? ବାବୁଙ୍କ ଆସିଯାଉ···

ଅଗଣି—ବାବୁଙ୍କ ଆସିଲେ କ'ଣ ଅଉ ହବ ? ତାଙ୍କ ଖବର ତ ମୁଁ ବୁଝୁଚି । ଆଉ ତମ କଥା ବ ବୁଝିବି । ମା, ଚଚ୍ଚା ବୋଲି ଡାକୁଚୁ, ପୁଣି ଲାଜ କାହିଁକି ? କ'ଣ କହୁଚ ମିଆଁ ?

ଆବ୍‌ବାଜାନ—ଇସ୍‌ମେ ମେରେ ବୋଲ୍‌ନେକା କ୍ୟା ହୈ ? ଏ ସବ୍‌ତୋ ଖୁଦାକ ମେହେରବାନୀ ।

ଅମୀନା—ଚଚ୍ଚା ! ବାବୁଙ୍କର ତବୟତ୍ ଭଲ ଅଛି ତ ?

ଅଗଣି—ଗଲା, ମୁଣ୍ଡଟାକୁ ବଗାଡ଼ିଦେଲୁ ?

ଅମୀନା—କ୍ୟା ହୁଆ, ଚଚ୍ଚା ?

ଅଗଣି—ହେଇଛି, ଆଉ ଯାହା ପଚ୍ଚରିବୁ ପଚ୍ଚର । ହେଲେ ମୋ ବାବୁଙ୍କ କଥା ପଚ୍ଚର ନା ।

ଅମୀନା—ବାବୁଙ୍କ ଉପରେ ଘୁସା ହେଇଚ, ଚଚ୍ଚା ? ବାବୁଙ୍କ ବହୁତ ଭଲ ଇନ୍‌ସାନ୍; ମଗର ମିଜାଜ୍ ଟିକେ ଅଟେଡ଼ବଟେଡ଼ । କ୍ୟୁଁ ନ ଅବ୍‌ବାଜାନ·· ଉସ୍‌ତରଫ କ୍ୟା ଦେଖ୍ ରହେ ହୈ ?

ଅବ୍‌ବାଜାନ—ମୁଝେ କହ୍ ଦେଖନେକେ ଦୋ, ବେଟୀ ! ଏ ମକାନ, ଏ ବା ବାଗ, ଏ ଫିଜା ମୁଝେ ଇତନା ଆଚ୍ଛା ଲଗ୍‌ତା ହୈ କି କ୍ୟା ବତାଉଁ···

ଅମୀନା—ଚଚ୍ଚା ! ମୋ ଉପରେ ଭି ଘୁସା ହେଇଗଲ ?

ଅଗଣି—କାହିଁକି ମିଛୁଟାରେ ତୋ ଉପରେ ମୁଁ ଘୁସା କରିବି, କହିଲୁ ଝିଅ ? ମୋ ଘୁସାକୁ କିଏ ଖାତର କରୁଛି ? ଆଲେ ମା, ମୁଁ ଯାହା ଉପରେ ଘୋସା ହବା କଥା, ସିଏ ତ ମୋ ଉପରେ ବାରହାତ ।

( ଅମୀନା ଖଟ ଓ ବଛଣା ସଜେଇବାରେ ଲାଗିଲା । )

ଅଗଣି—ଆଲେ ଝିଅ, ଏ କ'ଣ ? ଏତେବାଟ ଚାଲି ଚାଲି ଆସିଲୁ, ଟିକେ ନ ବସି ନାଗିଗଲୁ କାମରେ ? ଥାଉ ଥାଉ, କୋଉ ଏତେ ମେଣ୍ଟା ସେମିତି ରହିବ ?

ଗୋଟାଏ ଘଣ୍ଟା ତ, ତା'ପରେ ଯୋଉ କଥାକୁ ସେଇ କଥା ।

ଅମୀନା—ବାବୁଜୀ ତୁମକୁ ବହୁତ ତକ୍‌ଲିଫ୍ ଦେଉଛି, ଚଛା ?

ଅଗଣି—ମତେ କ'ଣ ତକ୍‌ଲିଫ ହବ ? ମନେ ଖାଲି ଧର୍ଣ୍ଣି ହଉଚ । କୋଉଥିରେ କ'ଣ ଠିକଣା ଅଛି ? ଖାଇବା, ପିଇବା, ଶୋଇବା···ସବୁ ପରା ବେଟାଇମ୍ । ତୁ ଝିଅ, ତାକୁ କେମିତ ସମ୍ଭାଳିପାରି କେଜାଣି !

ଅମୀନା—ଏ ତ ତାଙ୍କର ଗୋଟାଏ ଅଭ୍ୟାସ୍, ଚଛା ! ରୋଜ୍ ରୋଜ୍ ଏମିତ ତାଙ୍କର ପରେସାନ କରିବା ଗୋଟାଏ ସଉକ୍ ।

ଅଗଣି—ସେ ସବୁକ ଫାଅକ ଥାଉ ମା, ତୁ ଅମର ବସିଲୁ, ମୁଁ ଯାଇ ଟିକେ ଜଳଖିଆ ଆଣେ ।

( ଅଗଣି ଗୁଲ୍‌ଗଲ ବାମପାଖ ପଛ ଦୁଆର ଦେଇ । )

ଅମୀନା—ଆବ୍‌ବାଜାନ, ଶୁନା ଅପନେ, ଆଧିକ ଲଡ଼କେ ଲଡ଼କେ କ କନ୍‌ମତ ? ଆରେ ବାବା, ଉନ୍‌ହାଁ ଯୋ କୁଛ କରତେଥେ, ଉସ୍‌ତୋ ହମଲୋଗ ବରଦାସ୍ତ କରଲେତେ ଥେ । ମଗର୍ ଏ, ଇତନା ବଡ଼ା ଅମୀରୋଁ କା ମକାନ, ନୌକର ଚାକର, ଗାଡ଼ିମଟର—ମଗର ଦେଖୋନା, ଇନ୍‌ହାଁକ ଆଦବ କାଏଦା ଇନ୍‌ହେ ଜରାଭି ମାଲୁମ୍ ନେହିଁ ।

ଆବ୍‌ବାଜାନ—ତୁ ତୋ ବେଟୀ ହମେସାହି ଉସେ ବଦନାମ୍ କରତି ରହତି ହୋ । ଆନେ ଦୋ । ମୈ ଆଜ ଉସ୍‌ସେ ସବ୍ ବତାଦୁଁଗା ।

ଅମୀନା—ବଡା ଆଜିଏ । ମୁଝେ ପରୱା ନେହିଁ । ଆପ୍ ଅପନେ ବେଟେକେ ପାସ ଆରାମସେ ରହିୟେ । ମୈ ତୋ ଅପନ ସିଲାଇ ମେସିନ୍ ଲେକର ବସ୍ତିମେ ଚଲିଯାଉଁଗୀ ।

ଆବ୍‌ବାଜାନ୍—ଅକେଲି ?

( ଅଗଣି ଖାଇବା ଜିନଷ ହାତରେ ଧରି ଆସିଚ । )

ଅଗଣି—ହଉ ହଉ, ଝିଅ, ଯାହାର ମୁଆଡ଼େ ଯିବା କଥା ଯିବ । ହେଲେ ଆସ, ଖାଇଲ, ଆଗେ ଖାଇଦିଅ ।

ଆବ୍‌ବାଜାନ୍—ଆ ବେଟୀ ! ( ଖାଇବାକୁ ଦେଲ ) ତେରା ଟଛା ବହୁତ୍ ଜବରଦସ୍ତ୍ ହୈ । ଏ ହାମେ ନେହିଁ ଗ୍ରେଡ଼େଗା । ଭୂନେଭି ତୋ କଲ୍‌ସେ କୁଛ୍ ଖାୟାନେହିଁ ।

ଅମୀନା—ଏକ ବାତ୍ ଗୃଛା ! ବାବୁଜୀ କଛୁ ଲେଖାଲେଖି କରୁଛନ୍ତି ?

ଅଗଣି—ଲେଖାଲେଖି ? ମୁଁ ତ ବୂଢ଼ାଲୋକ, ମୁଁ କ'ଣ ବୁଝିବ ? ଖାଲି ଦେଖୁଚି, ଏ ଘରେ ଗଦାଏ ଲେଖା କାଗଜ ନିତ୍ୟ ଜମା ହେଉଚି । ମୁଁ ନିତ୍ୟ ସଫା କରିନେଇ ଅଳିଆ ଗଦାରେ ପକେଇଦେଇ ଆସୁଚି । ସେ ଆସନ୍ତୁ, ତାଙ୍କୁ ପଗ୍ଚରିବୁ । କ'ଣ ଲେଖୁଚନ୍ତି, କ'ଣ ପଢ଼ୁଚନ୍ତି, ସେ କହିବେ । ବସ ଟିକେ ମା, ମୁଁ ଆସୁଚି । ( ଭିତରକୁ ପ୍ରସ୍ଥାନ )

ଅମୀନା—ଦେଖ୍‌ରହେ ହେଁ ଆବ୍‌ବାଜାନ୍, ଇହାଁ ଇତନା କତାବ୍, ଇତନା ଅଖବାର, ଇତନା ପତ୍ରିକାଏଁ, ଇତନା ସାବ୍ ରହେତେଭି ବାବୁଜୀ କୁଛ୍ ଲିଖତେ ନେହିଁ ! ଆନେ ଦୋ ଉହ୍ନେ ଆଜ ।

ଆବ୍‌ବାଜାନ୍—ଓ ଲିଖେଗା ବେଟୀ, ବହୁତ୍ ଲିଖେଗା । (ବହି ଦେଖିଲ) ବହୁତ୍ ମୁଦ୍‌ଦତ୍ କେ ବାଦ୍ ମେରେ ବେଟେ ସେ ମିଲନେକେ ଲିୟେ ଖୁଦାନେ ମଉକା ଦିୟା । ଅବ୍ ଜିସ୍ ତରଫ ନିଗାହା ଫେର୍‌ତାହୁଁ, ମୁଝେ ମେରା ବେଟାହିଁ ବେଟା ନଜର ଆତା ହୈ । ଇସ୍ କତାବକେ ହର୍‌ପନୋମେଁ ଉସକି ତସବିର ନଜର ଆତି ହୈ । ଇନ୍‌ସା ଅଲ୍ଲା, ଆଜ ଜରୁର୍ ମୈ ଉସେ ଜୀଭର୍‌କେ ଦେଖୁଁଗା କୈସେ ହୋଗା ମେରା ବେଟା !

ଅମୀନା—ଐସା କହ୍‌କର୍ ତୋ ଆପ୍‌ନେ ଉହ୍ନେ ସର୍ ଚଢ଼୍ ରଖା ହୈ । ( ଅଗଣି ଆସିବା ଦେଖି ) ଆଚ୍ଛା ଗୃଛା, ଏତେ ରାତି ହେଲାଣି···ବାବୁଜୀ କେତେବେଳେ ଆସିବେ ? ହର୍‌ରୋଜ କଣ ଏମିତି ଡେରି କରେ ?

ଅଗଣି—ହଁ, ତାର କଣ କଛୁ ଠିକ୍ ଅଛି ? ଆଜ ଟିକେ ସେ ସିନେମା ଦେଖି ଯାଇଛି ।

ଅମୀନା—ଅକେଲେ ?

ଆବ୍ବାଜାନ—ତୁ ଘବ୍‌ରା ମତ୍ ବେଟୀ, ମେରା ବେଟା ଆତାହି ହୋଗା ।

ଅଗଣି—ଆସିବେ ନ ସିବେ କୁଆଡ଼େ ? ଶିଖା ଦେବୀ ପରା ସାଙ୍ଗରେ ଅଛନ୍ତି । କମ୍ ଝିଅ ସେ ! ନବାବ ପୁଅକୁ ଜବାବ ଦେଇବାଲି ।

ଅମୀନା—ସେ କିଏ, ଚାଚା ?

ଅଗଣି—ମନସ୍ୱା ଦେବୀଙ୍କ ଝିଅ । କଲେଜରେ ପଢନ୍ତି । ସେହି ପରା ତାଙ୍କର ଖବର ଅନ୍ତର ବୁଝୁଛନ୍ତି ।

( ଅମୀନା ହାତରୁ ବହି ଖସିପଡ଼ିଲା )

ଅଗଣି—ଭାରି ଭଲ ଝିଅ, ମା ! ଦେଖିବାକୁ ଯେମିତି ସୁନ୍ଦର ମନଟା ବି ସେମିତି ସୁନା । ଆସନ୍ତୁ, ଦେଖିବ ନା, ସାଙ୍ଗେ ସାଙ୍ଗେ କପରି ଆପଣାର କରିନେବେ !

( ଅମୀନା ଖାଉ ଖାଉ ରହିଗଲା )

ଅଗଣି—ଆଲୋ, କ'ଣ ହେଲା ମା ? ତୁ ଖା, ମୁଁ ଚା'ଟା ନେଇଆସେ । ( ବାମପଟ ପଛ ଦରଜା ଦେଇ ଚାଲିଗଲା । )

ଅମୀନା—ଆବ୍ବାଜାନ, ଚଲିଯେ, ହାମ୍ ଇହାଁସେ ଚଲେଯାଏଁ ।

ଆବ୍ବାଜାନ—କାହ୍‌ଲିଯେ ବେଟୀ ? ଆଜ୍ ଐସି ବହକି ବାତେଁ କାହିଁ କର୍‌ରହିହୋ ? ଯେ ତୋ ମେରେ ଅପ୍‌ନେ ବେଟାକା ଘର୍ ହୈ ।

ଅମୀନା—ମଗର ଆବ୍ବାଜାନ୍, ଯେ ଘର୍ ତୋ ଉନ୍‌କା ଅପ୍‌ନା ନେହି । ଓ୍ୱହ ତୋ ଇହାଁ ମେହମାନ୍, ଉନ୍‌କା ଇସ୍‌ପର କ୍ୟା ଅଧିକାର ହୈ ? ଘର୍‌କେ ମାଲିକ୍ ଅଗର ଯେ ପସନ୍ଦ ନକରେଁ ତୋ…

ଆବ୍ବାଜାନ—ଦେଖୋ ବେଟୀ, ଐସା ତୁମ୍ହେ ଶୋଚ୍‌ନା ନେହିଁ ଚାହିଏ । ହମ୍ ଲୋଗୋଁନେ କଭିଭି କୁଛ୍ ବିଗାଡ୍‌ନେ ତୋ ନେହିଁ । ଫିର୍ ଭି ମେରେ ବେଟାକୋ ଆନେ ତୋ ଦୋ…

[ ବାହାରୁ ସଞ୍ଜୟ ଆସିଛି । ହଠାତ୍ ସେମାନଙ୍କୁ ଦେଖି ବିରକ୍ତ ହୋଇ-ଉଠିଛି । ]

ଆବ୍‌ବାଜାନ-—ତୁ ଆଗୟୀ ବେଟା ? ଯୁକ୍ ନେ ଆଲ୍ଲା କା, ଆ ତୁଟେ ସିନେମେ ଲଗାଲୁଁ ।

ସଞ୍ଜୟ—ତମେମାନେ କାହିଁକି ଏଠିକି ଆସିଚ ? କ'ଣ ଗୃହ ? ମତେ ଟିକିଏ ଶାନ୍ତିରେ ରଖାଇ ଦେବ ନି ?

ଆବ୍‌ବାଜାନ—ବେଟା ଐସି ବାତ୍ କଉଁ କର୍ ରହେ ହୋ ? କ୍ୟା ହୋଗୟା ? କ୍ୟା ହୋଗୟା ତୁଝେ ?

ଅମୀନା—ବାବୁଜୀ, ଏ ତୁହ୍ମେ କ୍ୟା ହୋଗୟା ?

ସଞ୍ଜୟ—କିଛି ହେଇନି ମୋର । ତମେମାନେ ଗୁଲିଯାଅ ଏଠୁ ।

ଅମୀନା—ବସ୍ତିମେ ଆଗ ଲଗନେସେ ଆପ୍‌କେ ପାସ ହମ୍ ଚଲେ ଆୟେ ହେଁ, ବାବୁଜୀ ! ଐସା କହନା ଠିକ୍ ନେହିଁ !

ସଞ୍ଜୟ—ଆଶ୍ଚର୍ଯ୍ୟ ! ଏଇଟା କ'ଣ ଗୋଟାଏ ଧର୍ମଶାଳା, ଗେଷ୍ଟହାଉସ୍, ହୋଟେଲ, ପ୍ଲାଟଫର୍ମ ? ନା, ଆଶ୍ରୟ ମୁଁ କାହାକୁ ଦେଇପାରିବ ନି । ବିରୂପାକ୍ଷ, ଆବ୍‌ବାଜାନ୍, ଅମୀନା···ନା, ନା, ତମେମାନେ ଗୁଲିଯାଅ ଏଠୁ ।

ଅମୀନା—ବାବୁଜୀ, ତୁମ୍ ଇତନି ଜଲ୍‌ଦି ବଦଲ ଗୟେ ? ଆବ୍‌ବାଜାନ, ଚଲୋ ହମ୍ ଇହାଁସେ ଚଲେ ଯାଏଁ ଗେ ।

ସଞ୍ଜୟ—ହଁ, ତମେ ଗୁଲିଯାଅ ।

ଆବ୍‌ବାଜାନ—ବେଟା, ଇସ୍ ! ବୁଢ଼କୋଭି, ତେରେ ମୁହଁସେ ଐସି ବାତ ଶୁନ୍‌ନା ପଡ଼ା ! ମୈନେ ଅପ୍‌ନି ଦିଲ୍‌ମେ ବହୁତ୍ ଅରମାନ୍, ଆରଜୁଁ, ଉମିଦେଁ ରଖ୍‌କର ତୁଝେ ପାଲ୍ ପୋଷାଥା ବେଟା ! ଖୁଦାକି କସମ୍, ମୈନେ ଅପ୍‌ନି ବେଟେ-ସେଭି ତୁଝେ ଜ୍ୟାଦା ମୋହବତ୍ ଅଉର ପ୍ୟାର କିୟାଥା । ଉସ୍‌କେ ବଦଲ୍ ମେଁ ବହୁତ୍ କୁଛ୍ ମିଲ୍ ଗୟା । ଆଜ୍ ମେରେ ଦିଲ୍‌କେ ଟୁକୁଡ଼େ ଟୁକୁଡ଼େ ହୋ ରହେ ହେଁ । ୟା ଖୁଦା, ମୁଝେ ସବର୍ ଦେ । ପର୍ ବେଟା, ଇତନା ୟାଦ୍ ରଖନା, ଆଜ୍ ମେରେ ଦିଲ୍ ପର ଜୈସି ଚୋଟ୍ ପହୁଞ୍ଚାୟା ହୈ । ଇସ୍ ବୁଢ଼ୁରଗ୍

ବାପକେ କଲେଜ୍କି ପେ ଜୈସି ଗ୍ରେଟ୍ ହୋତେ ହେଁ, ୱୈସି ଗ୍ରେଟ୍ ୱୈସ ଠେମ୍ କଭି କିସିକୋ ମତ୍ ଦେନା । ଚଲେ ବେଟୀ !

ଅମୀନା—ଆବ୍ବାଜାନ୍ !

ଅବ୍ବାଜାନ—ଯେ ମେରା ତୁମ୍ହେ ଆଖିର ନସିହତ୍ ହୈ ବେଟା ! ଏ ଦଉଲତ୍, ଏ ହାଟନା ଅଓ୍ୱର ସଉକତ, ବଡ଼େ ବଡ଼େ ମକାନ୍ଅତ୍ ଇନ୍ ସବକେ ଭେତରେ ଆଁ ଖୋପର୍ ମଦ୍ହୋହୀକା ଯୋ ପରଦା ଗିର୍‌ଯାଆ ହୈ, ଯେ ସବ ଝୁଟ୍ ହୈ, ବରବାଦ ହୈ, ବେଗୁଫି ହୈ । ହମାରି ହମ୍‌ଦର୍ଦ୍ଦୀ, ଇନ୍‌ସାନିୟତ୍ ଔର ଖୁନ୍‌କା ଶତ୍ରାଦାସ୍ତୀ, ଏ ସବ୍ ଏକ ଇନ୍‌ସାନ କା ଜିନ୍ଦେ ବହୁତ୍ ହୀ ଜରୁରତ୍ ହୈ···ଇସ୍‌ସେ ମତ୍ ଭୁଲନା ବେଟା ! ଚଲେ ବେଟୀ !

( ଅମୀନା ଓ ଆବ୍ବାଜାନ୍ ବାହାରକୁ ଚାଲିଗଲେ । )

ଅଗଣି—( ଚା' ନେଇ ଭିତରୁ ଆସିଲ ) ଆରେ, ଏମାନେ ଗଲେ କୁଆଡ଼େ ?

ସଞ୍ଜୟ—ମୁଁ ତାଙ୍କୁ ବିଦା କରିଦେଇଚି ।

ଅଗଣି—କାହିଁକି, ବାବୁ ?

ସଞ୍ଜୟ—ତଡେ କ'ଣ ଏକ୍‌ସପ୍ଲାନେସନ୍ ଦେବି ?

ଅଗଣି—କେତେ ଭରସା କରି ସେମାନେ ଏଠିକି ଆସିଥିଲେ । ବୁଢ଼ା ଟା ତମ କଥା ଶୁଣି କେତେ ଖୁସି ହଉଥିଲା ! ଝିଅଟି ନ ଖାଇ ନ ପିଇ ତମ ଫେରିବା ବାଟକୁ ଚାହିଁ ବସିଥିଲା । ତାକୁ ଏମିତି ତମେ ବିଦା କରିଦେଲ ?

ସଞ୍ଜୟ—ହଁ, ମୁଁ ତଡ଼ିଦେଲି । ତୁ କିଏ କହିବାକୁ ? ବାହାର୍, ବାହାର ଏଠୁ !

[ ଅଗଣି ଚାଲିଗଲା । ଶିଖା ପ୍ରବେଶ କଲା ବାହାରପଟୁ ]

ଶିଖା—ସିନେମା ଦେଖିବାର ଯଦି ଇଚ୍ଛା ନ ଥିଲା, ତେବେ ମୋତେ ଡାକୁଥିଲ କାହିଁକି ?

ସଞ୍ଜୟ—ଇଚ୍ଛା ବିରୁଦ୍ଧରେ ତ ଏଠି ଏମିତି ଅନେକ କାମ କରିବାକୁ ପଡ଼ୁଚି ।

ଶିଖା—ତା' ବୋଲି ତମେ ଉଠି ଚାଲିଆସିବ !

ସଞ୍ଜୟ—ଛବିଟା ଭଲ ଲାଗିଲା ନାହିଁ । କ'ଣ ଦାନ୍ତ ଦେଖାଇ ବସିରହିଥାନ୍ତି ?

ଶିଖା—ଛବିଟା, ନା ମୋ companyଟା ?

ସଞ୍ଜୟ—ଉଭୟ !

ଶିଖା—ଓ, ତା'ହେଲେ ଡାକନଥିଲ କାହିଁକି ?

ସଞ୍ଜୟ—ତମ ଭଳି ଝିଅଙ୍କୁ ନେଇ ସିନେମା, ଥିଏଟର, ପିକ୍‌ନିକ୍, କ୍ଲବ, ପାର୍ଟି ଯିବାଟା ଗୋଟାଏ ଆରିଷ୍ଟୋକ୍ରେସି ବୋଲି ତମ ସୋସାଇଟି କହେ ।

ଶିଖା—ସେଇଥିପାଇଁ ତମେ ମୋତେ ଏକ୍‌ସପ୍ଲଏଟ୍ କରିବାକୁ ଚାହୁଁଥିଲ, ନା ? ଠିକ୍ ଅଛି । ଆଉ ମୁଁ କେବେ ତୁମ ସାଙ୍ଗରେ ଯିବିନି ।

ସଞ୍ଜୟ—କିଛି ଯାଏଆସେ ନାହିଁ, ଶିଖା ଦେବୀ ! ଆଜି ପାଇଁ ମୋ ପାଖରେ ତମର ପ୍ରୟୋଜନଟା ସରିଯାଇଚି । ଗୁଡ୍ ନାଇଟ୍ ।

( ସଞ୍ଜୟ moves off the light. ଶିଖା ଠିଆହୋଇଥାଏ । )

—ବିଶ୍ରାମ—



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ସଞ୍ଜୟଙ୍କର ସେଇ ରୁମ୍‌ । ରାତ । ଜହ୍ନ ଆଲୁଅ ଘରଭିତରେ ପଡ଼ୁଛି । ରେଡ଼ିଓରୁ ଦ୍ୱୈତ ସଙ୍ଗୀତ ବାଜଉଠୁଛି । ଟେବୁଲ ଲାଇଟ୍ ପାଖରେ ସଞ୍ଜୟ ବସିଛି । ସାମନାରେ ଖାତା ମେଲା ହୋଇ ପଡ଼ିଛି । ବାହାରପଟୁ ପଶିଆସିଛି ଶିଖା । ହାତରେ ରଜନୀଗନ୍ଧା ଫୁଲ । ]

ସଞ୍ଜୟ—କିଏ ?

ଶିଖା—ଏଇ ରାତ, ଏଇ ରଜନୀଗନ୍ଧାର ମିଠା ମହକ, ସ୍ୱପ୍ନ ଭିତରେ ଏଠିକି ଆଉ କିଏ ଆସିପାରେ ?

ସଞ୍ଜୟ—ଶିଖା !

ଶିଖା—ହଁ, ନନ୍ଦନବନର ଉର୍ବଶୀ ନୁହେଁ, ଅମରାବତୀର ପାରିଜାତ ନୁହେଁ, ଏଇ ମାଟିର ଶିଖା ।

ସଞ୍ଜୟ—କୁଆଡ଼େ ଆସିଲ ?

ଶିଖା—ଏମିତି···

ସଞ୍ଜୟ—ଏଇ ରାତର ଭିଜା ବାଜର, ଏଇ ଜହ୍ନର ରୂପେଲି ମାୟା, ରଜନୀଗନ୍ଧାର ମଦିରା ତୁମକୁ ଛନ୍ଦଛଡ଼ା କରିନି ତ ?

ଶିଖା—ଛନ୍ଦ ନେଇ ଚାଲିବାରେ ଆନନ୍ଦ ନ ଥାଏ, ସଞ୍ଜୟ ! ଟିକିଏ ବ୍ୟତିକ୍ରମ, ଟିକିଏ ରୋମାଞ୍ଚ, ଆଉ ଟିକିଏ କମ୍ପନ···ସେଇ ତ ଜୀବନ ! ! !

ସନ୍ତ୍ରସ୍ତ—ଭୁଲ୍ ! ଜୀବନକୁ ହରାଇବାର ଭଏ ଗୋଟାଏ ବଦଭ୍ୟାସ୍ !

ଶିଖା—ହରେଇବା ଭିତରେ ତ ହଜିଯିବାର ଗୌରବ !

ସନ୍ତ୍ରସ୍ତ—ଶିଖା !

ଶିଖା—ଆଃ ! ଆଉ କଣ୍ଠ ନାଁରେ ଡାକନା···

ସନ୍ତ୍ରସ୍ତ—( ନୀରବରେ ଲେଖିବାକୁ ଲଗିଲା । )

ଶିଖା—( ଲେଖାଟା ଛଡ଼ାଇନେଇ ହସିଲା । )

ସନ୍ତ୍ରସ୍ତ—(ନୀରବ ରହିଲା । )

ଶିଖା—(କାଗଜଟା ପଢୁଛି ) ହିଂ···ଛାଏ···ଆଃ ! ଗର୍ଜିଉଠିଲା ପ୍ରଶାନ୍ତ ମହାସାଗର ଶଭଲଭର୍‌ଟା; ଧୂଆଁ···ମଟର ସାଇକେଲଟା ଭୁଁ···ଉଁ କରି ଗୁଡ଼ିଗଲା— ( ହସି ) ଆଚ୍ଛା, ସନ୍ତ୍ରସ୍ତ, ଶେଷରେ ଆରମ୍ଭ କଲ "ଲାଲ୍ ଦସ୍ୟୁ" !

ସନ୍ତ୍ରସ୍ତ—Believe me, ଶିଖା ! ଦୀର୍ଘ ତିନି ମାସ ହେଲା ଲେଖିବାର ଚେଷ୍ଟା କରୁଛି । କିନ୍ତୁ କ'ଣ ଲେଖିବି, ସୁରଜିତ୍‌ବାବୁଙ୍କୁ କ'ଣ satisfy କରିବି— ଏଇ ଯେଉଁ complex, ଯାହା ଭିତରେ କ'ଣ ଲାଭ ହୋଇଛି ଜାଣିଚ ? ଅନେକ ରାତି ଜାଗରଣ, ଆଉ ପ୍ରଚୁର କାଗଜର ଶ୍ରାଦ୍ଧ ।

ଶିଖା—ଉପନ୍ୟାସ ନେଇ ଚେଷ୍ଟା କରନା···

ସନ୍ତ୍ରସ୍ତ—ସେ ଚେଷ୍ଟା ମୁଁ ଅନେକ କରିଚି । ଏଇ ମୋଜାଏକ୍ ଚଟାଣ, ମଖମଲ ଶେଯ, ନିଅନ୍ ଆଲୁଅ, ଯାହା ଭିତରେ ସବୁ ଭୁଲି ଯେତେଥର ମୁଁ କଲମ ଧରୁଛି, ମୋ ଆଗରେ ଆସି ଛିଡ଼ା ହୋଇଛି ଚିମିନିର କଳା କଳା ଧୂଆଁ, ଅପରିଚ୍ଛନ୍ନ ବୁଲ୍‌ବସ୍ତି, ଆଉ ସେଇ ଆଖିଗୁଡ଼ାକ···

ଶିଖା—ନ ହେଲା ଅବା ଉପନ୍ୟାସ, କବିତା ?

ସନ୍ତ୍ରସ୍ତ—କବିତା ?

ଶିଖା—ହଁ, ବୁଲ୍‌ବସ୍ତିର ନୁହଁ, ଏଇ ଉଇଙ୍ଗ ରୁମର କବିତା—

ସଞ୍ଜୟ—କିନ୍ତୁ ଏଠିକାର ମଣିଷ, ଏଠିକାର ଚଳଣି, ଏଠିକାର ପରିବେଶ, ସବୁ ମୋ ଆଖିରେ ମିଛ, ଛଳନା !

ଶିଖା—ମୁଁ···ମତେ ନେଇ ତ ତମେ ବେଶ୍ ଲେଖିପାରନ୍ତ !

ସଞ୍ଜୟ—ଶିଖା ?

ଶିଖା—ହଁ, ଏଇ ପରିଚୟ, ଏଇ ନିବିଡ଼ତା, ଏଇ ସ୍ୱଗରୁଷା, ମାନଅଭିମାନ, ଏଇ ଧରାଛୁଆଁ, ଯାଁ'କୁ ନେଇ କ'ଣ କବିତା ଲେଖିପାରନା ତମେ ?

ସଞ୍ଜୟ—ନା ।

ଶିଖା—ନା ! କାହିଁକି ? ଶିଖା ପରି ଗୋଟାଏ ରଙ୍ଗୀନ ପ୍ରଜାପତି ସଞ୍ଜ ସକାଳେ ତମ ଗୃହପାଖେ ଗୁଞ୍ଜନ କରି ଘୁରି ବୁଲୁଚି । ସେ ଗୁଞ୍ଜନ ତମ ମନରେ ଟିକିଏ ହେଲେ ରଙ୍ଗ ବୋଳିପାରୁନି ? ତମକୁ ଟିକିଏ ହେଲେ ଉନ୍ମନା କରୁନି ? କୁହ, କୁହ ସଞ୍ଜୟ, ମୁଁ କ'ଣ ତମର ସେଇ ଆଗାମୀ କାବ୍ୟର ନାୟିକା ହେଇପାରେନା ?

ସଞ୍ଜୟ—ନା ।

ଶିଖା—କାହିଁକି ?

ସଞ୍ଜୟ—ଫିଲ୍ମର ମଡେଲ ତମେ ହେଇପାର, ଦୋକାନର ସୋ'କେସ୍‌ରେ ଦାମୀ ପୋଷାକର ଜରିଦିଆ କାଚ କଣ୍ଢେଇ ହେଇପାର ; କିନ୍ତୁ ହେଇପାରନା ମୋର ଆଗାମୀ କାବ୍ୟର ନାୟିକା ।

ଶିଖା—Stop, Stop I say···

( ଶିଖା ସଞ୍ଜୟର ସାର୍ଟଟା ଛାଡ଼େଇଦେଇଛି । )

ସଞ୍ଜୟ—କ'ଣ ଏତିକରେ ସବୁଜ ମନ ତମର ରକ୍ତାକ୍ତ ହୋଇଗଲା ? ଏଇ ମନ ନେଇ ତମେ ଆସିଥିଲ କବିର ମାନସୀ ହେବାକୁ ? କ'ଣ ଅଛି ତମର ? ଏଇ ଦେହ, ଏଇ ରୂପ, ଏଇ ଗୃହାଣି, ଏଇ ହସ, ଗୋଟିଏ ପୁରୁଷ ପାଇଁ ଇଏ ଯଥେଷ୍ଟ ହୋଇପାରେ, ହେଲେ ମୋ ପାଇଁ ଇଏ ଗୋଟାଏ ମିଛ, ଫାଙ୍କି ।

[ ସଞ୍ଜୟ ଚାଲିଯାଇଛନ୍ତି, ଆସିଛନ୍ତି ମଳୟା ଦେବୀ । ]

ମଳୟା—ବେବୀ ! ଆଶାକରେ, ତୋ ଘଣ୍ଟାଟା ଠିକ୍ ଟାଇମ୍ ରଖୁଚି ?

ଶିଖା—ଅଭିଜାତ କମ୍ପାନୀର ଦାମିକା ଘଣ୍ଟାଟା ତା' କାମରେ କ'ଣ କେବେ ଖିଲାଫ କରେ ?

ମଳୟା—ହେଲେ ଅଭିଜାତ ଘରର ଶିକ୍ଷିତା ଝିଅ ତା' କର୍ତ୍ତବ୍ୟରେ ଖିଲାଫ କରୁଚି କେମିତି ?

ଶିଖା—ବୋଉ ! ! !

ମଳୟା—କାହିଁକି ତୁ ଏଠିକି ଆସିଥିଲୁ ?

ଶିଖା—ସବୁଦିନେ ଆସେ ।

ମଳୟା—କିନ୍ତୁ ମୁଁ ଏଟା ପସନ୍ଦ କରେନା ।

ଶିଖା—ବେଶ୍ ! କାଲି ସୁରଜିତବାବୁ ଆସନ୍ତୁ, ମୁଁ ତାଙ୍କୁ କହିଦେବି ।

ମଳୟା—ବେବି, ମୁଁ ଦେଖୁଚି, ତୁ ହିଂସ୍ର ଶିକାର ଗୁଡ଼ି ଠେକୁଆ ପଛରେ ଲାଗିଚୁ ।

ଶିଖା—ଲକ୍ଷ୍ୟଟା ଠିକ୍ କରିବାକୁ ହବ ତ ?

ମଳୟା—ବେବୀ, ଅବୁଝା ହୁଅନା ! କ'ଣ ନାହିଁ ତୋର ? କାହିଁକି ଏମିତି କାଙ୍ଗାଳୁଣୀ ପରି ଘୁରିବୁଲୁଚୁ ? ସୁର ସିନା ଉପରେ କିଛି କହୁନ; ହେଲେ, ମନେ ମନେ କ'ଣ ଭାବୁଥିବ, କହିଲୁ ?

ଶିଖା—ତାଙ୍କ ପାଖରେ ମୋର ସବୁଠୁ ବଡ଼ ଗ୍ଲାମର ହେଉଚି, ମୁଁ ତୋ ଝିଅ ।

ମଳୟା—ତଥାପି ମୁଁ କହିବି, ତୁ ଅବାଟରେ ଯାଉଚୁ ।

ଶିଖ—ମାନେ ?

ମଳୟା—ସଞ୍ଜୟକୁ ଭଲପାଇଚୁ ।

ଶିଖା—ବୋଉ ! ( ଫୁଲ ଛଣ୍ଡାଇଛି ) ଏ ଘରର ଗୁଳକଚାକରଠୁ ଆରମ୍ଭ କରି ସମସ୍ତେ ତାକୁ କଥାକଥାକେ ଉପହାସ କରିଚ ; ହେଲେ ମୁଁ ତା ଏପର୍ଯ୍ୟନ୍ତ

କରନ୍ତ, ଏଇ ତ ମୋର ଦୋଷ ! ଆଚ୍ଛା, ବୋଉ, ମୁଁ ବ କ'ଣ ତାକୁ ଲାଞ୍ଛନା ଦେଇପାରେ ନା ।

ମଳୟା—ଶିଖା !

ଶିଖା—ହଁ, ବୋଉ, ମୁଁ ବ ତାକୁ ଉପହାସ କରିବ, ଆଉ ସେଇ ହବ ତା' ଜୀବନର ସବୁଠୁ ନିଷ୍ଠୁରତମ ଉପହାସ । ( ବାହାରକୁ ଗ୍ଳଲଗଲା । )

ମଳୟା—ଦେବୀ ! ! ! ( ପଛେ ପଛେ ବାହାରକୁ ଗ୍ଳଲଗଲେ )

( ବଂଶୀର ଆଳାପରୁ ଶୋହ୍ନୀ ରାଗର ମୂର୍ଚ୍ଛନା । )

ସଞ୍ଜୟ—ଭିତରୁ ଆସିଲ ଦେଖିଲା, କେହି ନାହାନ୍ତି । ରେଡ଼ିଓ ଖୋଲିଲ ; କିନ୍ତୁ କିଛି ଷ୍ଟେସନ ଧରିଲାନି । ଗଡ଼ ଗଡ଼ sound ବନ୍ଦ କରି ଆସିଲାବେଳେ ଦେଖିଲା ଛିଣ୍ଡାଫୁଲ, ଫୋପାଡ଼ିଦେଲ ବାଲ୍‌କୋନି ବାଟେ । ବାହାରୁ ଆସିଲ ମେଘନାଦ । ]

ମେଘନାଦ—ନମସ୍କାର, ନମସ୍କାର, ଏ କ'ଣ ? କେହି ନାହାନ୍ତି ? ଲେଖକବାବୁ ଗଲେ କୁଆଡ଼େ ?

ସଞ୍ଜୟ—ଆରେ, ମେଘନାଦବାବୁ, ନମସ୍କାର !

ମେଘନାଦ—ଚହ୍ନିପାରୁଛନ୍ତି ତା'ହେଲେ ।

ସଞ୍ଜୟ—ବିଖ୍ୟାତ 'ଶିଳ୍ପୀ' ପତ୍ରିକାର ନିଜସ୍ୱ ପ୍ରତିନିଧି, ଚହ୍ନିବି ନାହିଁ !

ମେଘନାଦ—ନା ନା, ଏମିତି କହି ଲଜ୍ଜା ଦେବେନି ।

ସଞ୍ଜୟ—ଆପଣଙ୍କ ପାଖରେ ମୋର ଗୋଟାଏ ଜରୁରୀ କାମ ଥିଲା, ମେଘନାଦବାବୁ ! ଏଇ ମୁହୂର୍ତ୍ତରେ ଆପଣ ନ ଆସିଥିଲେ ମୁଁ ହୁଏତ ଆପଣଙ୍କ ପାଖକୁ···

ମେଘନାଦ—କି କଥା କହୁଛନ୍ତି, ଆଜ୍ଞା, ଆପଣ ପୁଣି ମୋ ପାଖକୁ ଯିବେ ? ନା ନା, ମୋତେ କହିଲେ ତ ମୁଁ ନଇଁଥି ଆସି ଆପଣଙ୍କ ପାଖରେ ହାଜିର୍ ଦେବ ।

ସଞ୍ଜୟ—ଆସିଯାଇଛନ୍ତି ଯେତେବେଳେ ସେ ପ୍ରଶ୍ନ ଆଉ ନ୍ଦୁନ । ଏଇ ଖବରଟା ଆପଣଙ୍କୁ କାଗଜରେ ଦବାକୁ ହବ ।

ମେଘନାଦ—ନିଶ୍ଚୟ, ନିଶ୍ଚୟ । କ'ଣ ଖାଲି ଖବର ନା ଫଟୋ ?

ସଞ୍ଜୟ—ନା, ନା, ଫଟୋ ଫଟୋ ନୁହେଁ ।

ମେଘନାଦ—Alright.

ସଞ୍ଜୟ—ମୁଁ ଗୋଟାଏ ଉପନ୍ୟାସ ଲେଖା ଆରମ୍ଭ କରିବି ।

ମେଘନାଦ—Congratulation ! ! ( ହ୍ୟାଣ୍ଡସେକ୍ କରି ) ମୁଁ ଜାଣେ, ଆପଣ ନିଶ୍ଚୟ ଲେଖିବେ । ନ ଲେଖି ଆପଣ ରହିପାରିବେ ନି । ସୁରେନ୍ଦ୍ରବାବୁ ଆପଣଙ୍କୁ ହେଉଁ ସମୟ, ସୁଯୋଗ ଆଉ ପରିବେଶ ଦେଇଛନ୍ତି···

ସଞ୍ଜୟ—ହଁ, ମୁଁ ଏଇ ପରିବେଶକୁ ନେଇ ଲେଖୁଛି, ଏଇ ସମାଜର କାହାଣୀ ।

ମେଘନାଦ—ରୁହନ୍ତୁ, ରୁହନ୍ତୁ···ମୁଁ ଟିକିଏ ନୋଟ୍ କରିନିଏଁ । ( ଖାତା କାଢ଼ି ଲେଖିଲେ । ) ହଁ, ଏଥର କୁହନ୍ତୁ···ବହିଟିର ନାଁ କ'ଣ ଦେଇଛନ୍ତି ?

ସଞ୍ଜୟ—ନାଁ ଦେଇଛି "ଇନ୍ଦ୍ରାଣୀ" ।

ମେଘନାଦ—ଆଃ, ଅପୂର୍ବ ହୋଇଚି । ବହିଟାର ଖୁବ୍ ଶୀଘ୍ର କାଟ୍ତି ହୋଇଯିବ । ଖାଲି ଟିକେ publicity ଦରକାର । ଆଉ ଉପର ମଲାଟଟା tri-colour କରିବାକୁ ହେବ । ସୁରେନ୍ଦ୍ରବାବୁ ତ ଅଛନ୍ତି, ସେ ସବୁ ଠିକ୍ କରିଦେବେ । ଆପଣଙ୍କୁ କିଛି ଆଉ ଭାବିବାକୁ ପଡ଼ିବନି ।

ସଞ୍ଜୟ—ସେ ବିଶ୍ୱାସ ମୋର ଅଛି । ଆପଣ ଖାଲି ଟିକେ ଭଲକରି ଲେଖିବେ ।

ମେଘନାଦ—ସ୍ୱା ଆଉ ପଗ୍ଚରୁଛନ୍ତି ! 'ଶିଳ୍ପୀ'ର cover page ରେ ରହିବ 'ଇନ୍ଦ୍ରାଣୀର'ର advertisement, ଆଉ ଭିତରେ ଏଇସବୁ କଥା ଯାହା ମୁଁ ନୋଟ୍ କରିନେଉଛି । ଆପଣ ନିଶ୍ଚିନ୍ତ ଥାଆନ୍ତୁ ।

ସଞ୍ଜୟ—ଅନେକ ଧନ୍ୟବାଦ ଆପଣଙ୍କୁ ।

ମେଘନାଦ—ଆଚ୍ଛା, ସେମିତି କହିବେ ନାହିଁ, ବରଂ ଆପଣଙ୍କ ଜୀବନୀଟା ଯଦି ଦୟାକରି···

ସଞ୍ଜୟ—ଜୀବନୀ ! ଜୀବନୀ ତ ଆରମ୍ଭ ହେଲା ଏଇଠୁ ।

ମେଘନାଦ—ସଞ୍ଜୟବାବୁ ! ଆପଣଙ୍କୁ ଗତ ଥର ଦେଖିଥିଲି, ଆଉ ଏଥର ଦେଖୁଛି । ଏଇ ତିନିମାସ ମଧ୍ୟରେ ଆପଣ ଆଶ୍ଚର୍ଯ୍ୟ ରକମର ବଦଳିଯାଇଛନ୍ତି । ମୁଁ କହିବି ସଞ୍ଜୟବାବୁ, ଆପଣ ସଞ୍ଜୀବିତ ହୋଇଉଠିଛନ୍ତି । ଆରମ୍ଭ ହୋଇଛି ଆପଣଙ୍କର ଜୀବନ । ଆଜି ସେଇଥିପାଇଁ ମୋର ଇଚ୍ଛା ହୋଇଛି, ଏମିତି ଗୋଟାଏ momentରେ ଆପଣଙ୍କର ଜୀବନୀଟାକୁ ଲିପିବଦ୍ଧ କରିଦିଅନ୍ତୁ ।

ସଞ୍ଜୟ—ନା, ଜୀବନୀ ଦରକାର ନାହିଁ ; ବରଂ ଆଉ ଗୋଟାଏ ଖବର ଶୁଣିଲେ ଆପଣ ଖୁସି ହେବେ ଯେ, ମୋର ଲେଖା ପାଇଁ ସୁରଜିତ୍‌ବାବୁ ଯେତିକି ଦାୟୀ, ତା'ଠୁ ବେଶି ଦାୟୀ ଶିଖା ଦେବୀ ।

ମେଘନାଦ—ଶିଖା ଦେବୀ' ମାନେ, ବିଖ୍ୟାତ ନାରୀ କବି ମଳୟା ଦେବୀଙ୍କର ବିଖ୍ୟାତ ଝିଅ ତ ?

ସଞ୍ଜୟ—ଆପଣ ତାଙ୍କୁ ଚିହ୍ନନ୍ତି ?

ମେଘନାଦ—ହଁ, ମୁଁ ତାଙ୍କୁ ଚିହ୍ନେ । କିନ୍ତୁ ଖାଲି, ଦୁଃଖର କଥା, ସେ ମୋତେ ଚିହ୍ନନ୍ତି ନାହିଁ । ଯାହାହେଉ, ଆଜି ଗୋଟାଏ chance ମିଳିଛି, ତାଙ୍କୁ ଯାଇ congratulation ଦେଇଆସିବି । Automatically ଆଳାପଟା ମଧ୍ୟ ହୋଇଯିବ । ଆଚ୍ଛା, ମୁଁ ତାହାହେଲେ ଆସୁଛି ଆଜି । ଟା···ଟା······

( ବାହାରକୁ ଚାଲିଗଲେ )

[ ମେଘନାଦ ଚାଲିଗଲା ପରେ ସଞ୍ଜୟ ବହିଗୁଡ଼ାକ ଖୋଲାଇଲା । ତା'ପରେ ବସି ଲେଖିବାକୁ ଚେଷ୍ଟା କଲା । Backgroundରେ ଶୁଭୁଥିଲା କୁଳବଧୂ ଯୋଉବାର sound effect. ସେ ଅତିଷ୍ଠ ହୋଇପଡ଼ିଲା । କଲମ ବନ୍ଦ ହୋଇଗଲା । ଲେଖିଥିବା କାଗଜଗୁଡ଼ାକ ଚିରି ଫିଙ୍ଗିଦେଲା । Table lightଟା ଲିଭାଇଦେଲା । ]

—ଅନ୍ଧାର—



## ଦ୍ୱିତୀୟ ଦୃଶ୍ୟ

[ ସକାଳ—ଅଗଷ୍ଟି ଘର ଓଲାଉଥିଲା ।

ଅଗଷ୍ଟି—ପାର ହେଲା ନାହିଁ । ନଇତ ସକାଳୁ ବୋହେଇ କାଗଜ ! କି ଲେଖା ଗୁଲାଚ୍ଛି କେଜାଣି ? ଲେଖା ତ କିଛି ଦିଶୁନି···ଖାଲି କାଗଜ ।

[ କଥା ହୋଇ ଆସୁଥିଲେ ସୁରଜିତ ଓ ସଞ୍ଜୟ ]

ସୁର—ନା, ଏ ତମର ଅନ୍ୟାୟ ।

ସଞ୍ଜୟ—କାହିଁକି ?

ସୁର—ସବୁଯାକ paper ଯେତେବେଳେ ଆମ supportରେ ଲେଖୁଛନ୍ତି, ମୋ ନିଜ କାଗଜ ଲେଖୁଚ ମୋ ବିରୁଦ୍ଧରେ ?

ସଞ୍ଜୟ—ଆପଣଙ୍କ ବିରୁଦ୍ଧରେ !

ସୁର—ନିଶ୍ଚୟ, ମିଲ୍‌ଟା ମୋର, ତେଣୁ ମାଲିକ ବିରୁଦ୍ଧରେ ଲେଖିବା ମାନେ ସୁରଜିତ ଚୌଧୁରୀ ବିରୁଦ୍ଧରେ ଲେଖିବା ।

ସଞ୍ଜୟ—ଏ କଥା ତ ମୁଁ ଜାଣିନି ?

ସୁର—ମୁଁ କିନ୍ତୁ ବହୁତ ଆଗରୁ ଜାଣିଚି, ତମେ କ'ଣ । ଜାଣିଚି ତମର ଇତିହାସ । ଆଉ ସବୁ ଜାଣିଶୁଣି ମୁଁ ତମକୁ ଆଶ୍ରୟ ଦେଇଚି । କିନ୍ତୁ ତମେ ତା'ର ପ୍ରତିଦାନରେ କରିଚ କ'ଣ ? ମୋର ଘରେ ରହି ମୋର କାଗଜରେ ମୋର ବିରୁଦ୍ଧରେ ଲେଖୁଚ ?

ସଞ୍ଜୟ—ସ୍ୱାଧୀନ ମତ ଦେବା ଯେକୌଣସି ସମ୍ପାଦକର କର୍ତ୍ତବ୍ୟ ।

ସୁର—D·mn it ! କେଉଁଠି ଥିଲା ତମର ଏଇ ସ୍ୱାଧୀନ ମତ ? କିଏ ଦେଲା ତମକୁ ଏ ଟ୍ରାନ୍ତ ଏତେ ବଡ଼ ଗୋଟାଏ Daily paperରେ ସମ୍ପାଦକ ହବାର ସମ୍ମାନ ?

ସଞ୍ଜୟ—ମୁଁ ତ ଆପଣଙ୍କୁ ଗୃହକାର୍ଯ୍ୟ ମାଗି ନ ଥିଲି ?

ସୁର—ଜାଣେ, ମାଗି ନ ଥିଲ । ମୁଁ ନିଜେ ଇଚ୍ଛା କରି ଦେଇଥିଲି ତମକୁ ଗୋଟାଏ ସୁଯୋଗ । ତମକୁ ବଡ଼ ହେବାର ଗୋଟାଏ ରାସ୍ତା ଦେଖେଇଦେଇଥିଲି । କୁଲିବସ୍ତିର ସେଇ ନୁଆଁଣିଆଁ ଘର ଭିତରେ ତମେ ଶ୍ୱାସରୁଦ୍ଧ ହୋଇ ମରିଯାଇ-ଥାଆନ୍ତ । ଲୋକେ ତୁମକୁ ଚିହ୍ନି ନ ଥାନ୍ତେ, ଜାଣି ନ ଥାନ୍ତେ । ମୁଁ ତୁମକୁ ବଞ୍ଚିବାର ସୁଯୋଗ ଦେଲି···ତମ ଲେଖାକୁ ଆଣିଲି ଆଲୋକକୁ ।

ସଞ୍ଜୟ—ଆପଣଙ୍କର ଋଣ ମୁଁ ଚିରଦିନ ମନେ ରଖିବି ।

ସୁର—ମୁଁ ବି ମନେ ରଖିବି ତମର ବେଇମାନୀ···ତମର ନିମକହାରାମୀ । ସମସ୍ତଙ୍କୁ ତମେ ଫାଙ୍କି ପାର ସଞ୍ଜୟ, ହେଲେ ସୁରଜିତ ଚୌଧୁରୀଙ୍କୁ କେବେ ଫାଙ୍କି ଦେବାର ଚେଷ୍ଟା କରିବ ନାହିଁ ।

ସଞ୍ଜୟ—ମୋତେ ବିଶ୍ୱାସ କରନ୍ତୁ ।

ସୁର—ବିଶ୍ୱାସ କରିବି ? ହାଃ···ହାଃ···ହାଃ···ଜାଣିଚ ସଞ୍ଜୟ, ମୋ ବାପା ଧନଞ୍ଜୟ ଚୌଧୁରୀ ଥିଲେ ପ୍ରତାପୀ ଜମିଦାର । ଏ ଦେଶର କଳାଲୋକ ତ ଦୂରର କଥା, ଗୋରା ସାହେବମାନେ ବି ଡରୁଥିଲେ ତାଙ୍କ ଶାସନକୁ । ମଲାବେଳେ ସେ ତାଙ୍କର ଏଇ ଅଯୋଗ୍ୟ ପୁଅ ହାତରେ ସବୁ ସମ୍ପତ୍ତି ଟେକିଦେଇ କ'ଣ କହୁଥିଲେ ଜାଣିଚ ? କହୁଥିଲେ, "କାହାରିକୁ ବିଶ୍ୱାସ କରିବୁ ନାହିଁ···ନା, କାହାରିକୁ ନୁହେଁ । ଦୁନିଆରେ ସବୁଠୁ ବିଶ୍ୱାସଘାତକ, ସବୁଠୁ ବେଇମାନ ହେଉଚି ଏଇ ମଣିଷ ।"

ସଞ୍ଜୟ—ଆପଣ ମିଛରେ ମୋ ଉପରେ···

ସୁରଜିତ—ମିଛରେ ? ସୁରଜିତ ଚୌଧୁରୀ ମିଛରେ କେବେ ଏତେ ସମୟ କୋଉଠି ନଷ୍ଟ କରିବାର ଦେଖିଚ ? ତାର ପ୍ରତିଟି ସେକେଣ୍ଡ ସାଙ୍ଗରେ ଜଡ଼ିତ ଲକ୍ଷ ଲକ୍ଷ ଡଲାରର business ! ବାଜେ କଥା ନେଇ ଯୁକ୍ତିତର୍କ କରିବା ଲୋକ ସେ ନୁହେଁ ।

ସଞ୍ଜୟ—ଆପଣ ମୋତେ ଭୁଲ ବୁଝିଚନ୍ତି ।

ସୁର—ବେଶ୍, ତମେ ମୋତେ ଠିକ୍ ବୁଝିବାର ସୁଯୋଗ ଦଅ । ନା, apology ନୁହେଁ । ତମେ ଗୋଟାଏ "ଭ୍ରମ ସଂଶୋଧନ" ଲେଖିଦଅ ଆସନ୍ତାକାଲିର କାଗଜରେ !

ସଞ୍ଜୟ—ଭ୍ରମ ସଂଶୋଧନ ! ! !

ସୁର—ହଁ, draft ଟା କରି ଆଜି ମୋତେ ଦେଖେଇଦେବ । ବୁଝିଲ ? କାଲି positively ଯେମିତି···

ସଞ୍ଜୟ—କିନ୍ତୁ ମୁଁ କ'ଣ ପାରିବି ?

ସୁର—ନିଶ୍ଚୟ ପାରିବ । ସେଇଥିପାଇଁ ତମକୁ କ୍ଳବ୍ୟୁରୁ ଏଠିକି ଅଣାଯାଇଛି । Do it, without fail···positively tomorrow ! ! !

(ପ୍ରସ୍ଥାନ)

[ ସୁରଜିତ ଚାଲିଗଲେ । ସଞ୍ଜୟ ଗୁହିଁରହିଲା ସିଲ୍‌ଅଡ଼କୁ । ଚିମିନିରୁ ଧୂଆଁ ବାହାରୁଛି···ବାଜୁଛି ମିଲ୍‌ର ଭୁଙ୍ଗା । ପଶିଆସିଛି ଶିଖା···ଅପୂର୍ବ ତା'ର ବେଶଭୂଷା···'ଇନ୍ଦ୍ରାଣୀ'ର ନାୟିକା ଆଜି ସତରେ ଇନ୍ଦ୍ରାଣୀ ସାଜି ଆସିଛି । ]

ଶିଖା—ସୁରଜିତବାବୁ ଇଆଡ଼େ ଆସିଥିଲେ ?

ସଞ୍ଜୟ—( ମୁଗ୍ଧ ହୋଇ ତାକୁ ଗୁହିଁଥିଲା । )

ଶିଖା—ପଚାରିଲେ ଜବାବ ଦେଇପାରୁନ ?

ସଞ୍ଜୟ—ତମେ ଆଜି କ'ଣ ଦେଖାଯାଉଛ ! ! ! ସତେ ଯେମିତି ମୋ' 'ଇନ୍ଦ୍ରାଣୀ'ର ନାୟିକା···

ଶିଖା—ସଞ୍ଜୟ, କ'ଣ ଇମିତି ସବୁ ବାଜେ କଥା କହୁଛ ?

ସଞ୍ଜୟ—ବାଜେ କଥା ? ତମେ ମୋତେ କହିଲ ଲେଖିବାକୁ··· ମୁଁ ଲେଖିଛି । "ଇନ୍ଦ୍ରାଣୀ" ପଢ଼ିଲେ ତମେ ପାଗଳ ହୋଇଯିବ ।

ଶିଖା—ମୁଁ କହିଥିଲି ତମକୁ ମୋତେ ନେଇ ଲେଖିବାକୁ ? ହାଃ···ହାଃ,ତମେ ବୋଧହୁଏ ସ୍ୱପ୍ନ ଦେଖିଚ ।

ସନ୍ତୋଷ—ପରିହାସ କର ନାହିଁ, ଶିଖା ! ସୁରଜିତବାବୁ ମୋତେ ଆଶ୍ରୟ ଦେଇଛନ୍ତି ସତ, କିନ୍ତୁ ତମେ ମୋତେ ଦେଇଚ ପ୍ରେରଣା ; ପାଖେ ପାଖେ ରହି ମୋର ପ୍ରତି ସନ୍ଧ୍ୟାକାଳକୁ ତମର କଳ ଗୁଞ୍ଜନରେ ମୁଖରିତ କରି ମୋ କାନେ କାନେ କହିଚ, ତମେ ଲେଖ···ତମେ ବଡ଼ ହୁଅ ।

ଶିଖା—ସନ୍ତୋଷ ।

ସନ୍ତୋଷ—ହଁ, ସତରେ ମୁଁ ଲେଖିବି, ଶିଖା ! ମୁଁ ବଡ଼ ହେବି । ନାଟକ, ଉପନ୍ୟାସ, କବିତା, ଯାହା କହିବ ସବୁ ଲେଖିବି । ଲେଖିବି ଖାଲି ତମରି ପାଇଁ···ତମରି ପ୍ରେରଣାରେ ।

ଶିଖା—ମୋ ପାଇଁ ! ମୋର ପ୍ରେରଣାରେ ! ମୁଁ ତମକୁ ପ୍ରେରଣା ଦେଇପାରିବି କୋଉଠୁ ? କ'ଣ ଅଛି ମୋର ? ଏଇ ଦେହ, ରୂପ, ଏ ସବୁ ନେଇ ମୁଁ ଖାଲି ଶିଳ୍ପୀର ମଡେଲ୍ ହୋଇପାରେ · ହେଲେ, ଜଣେ କବିକୁ ଦେବାପାଇଁ ମୋର କିଛି ନାହିଁ । ମୁଁ ଗୋଟାଏ ସୌରଭହୀନ କାଗଜର ଫୁଲ, ନିର୍ଜୀବ କାଚର ପ୍ରତିମା···ମୋର ସ୍ନେହ, ମମତା, ଅନୁଭୂତି କିଛି ନାହିଁ ।

ସନ୍ତୋଷ—ଶିଖା, କ'ଣ ଇମିତି ପାଗଳଙ୍କ ପରି କହୁଚ ?

ଶିଖା—କିଏ ମତେ ପାଗଳ କରିଚି ? ତମେ ! ଆଉ ଆଜି ମତେ କହୁଚ···

ସନ୍ତୋଷ—ଶିଖା ! !

ଶିଖା—ଏଇ ନାଁ ଧରି ଡାକିବାର ଦୁଃସାହସ ଆଉ କେବେ କରିବନି ସନ୍ତୋଷ ! ସୁରଜିତ୍ ପାଖରେ ତମେ ଜଣେ ଦରମାଖିଆ ଚାକର । ଆଉ ମୁଁ ଏ ଘରର ଘରଣୀ ବଧୂ···ମିସେସ୍ ଚୌଧୁରୀ !

ସନ୍ତୋଷ—ଶିଖା ! ! !

ଶିଖା—ହଁ, ତମକୁ ମୋର ଠିକ୍ ସେଇ ଆଖିରେ ଦେଖିବା କଥା, ଯୋଉ ଆଖିରେ ସୁରଜିତ୍ ତମକୁ ଦେଖେ···ଜଣେ ଧନହୀନ, କାଙ୍ଗାଳ, ଭିକାରି

ଭିକାରି ପରି । ତମକୁ ଦୟା କରାଯାଇପାରେ, ଅନୁକମ୍ପା କରାଯାଇପାରେ ; ନା, ତା'ଠୁ ବେଶି କିଛି ନୁହେଁ ।

[ ବାହାରୁ ମଳୟା ଦେବୀ ପଶି ଆସିଛନ୍ତି ଭିତରକୁ । ସଞ୍ଜୟ ଚାଲିଯାଇଛି । ଶିଖାକୁ ସଞ୍ଜୟ ନିକଟରେ ଦେଖି ରାଗ, କ୍ଷୋଭ, ଅପମାନରେ ସେ ଲାଲ ହୋଇ-ଉଠିଛନ୍ତି । ]

ମଳୟା ଦେବୀ—ମୁଁ ଜାଣେ, ତୁ ଠିକ୍ ଏଇଠିକି ଆସିଥିବୁ !

ଶିଖା···ହଁ, ଆସିଛି, ହେଲେ ଆଗ ଭଳି ଆସିନାହିଁ । ମତେ ଦେଖି ତୁ କ'ଣ ଏତିକି ବୁଝି ପାରୁନୁ ? ଆଜି ମୁଁ ଠିକ୍ ତୋ ଝିଅ ଭଳି ଦେଖାଯାଉନାହିଁ, ବୋଉ ? ମୋ ବାପା India Govt. ର retired deputy secretary, ମା ବିଖ୍ୟାତ ନାଟ୍ୟକବି । ତମମାନଙ୍କ ଝିଅ ହୋଇ ମୁଁ କେବେହେଲେ ଏମିତି କୁଳବନ୍ତିର ଜଣେ ଦରିଦ୍ର କବିକୁ ଭଲ ପାଇପାରେ ? ନା, ବୋଉ ନା !

[ ଶିଖା ଦ୍ରୁତପଦରେ ଚାଲିଗଲା । ତା' ପଛେ ପଛେ 'ବେବୀ ବେବୀ' ଡାକି ମଳୟା ଦେବୀ ଚାଲିଗଲେ । ଏ ଦୃଶ୍ୟର ଅଦୃଶ୍ୟ ଦର୍ଶକ ହିସାବରେ ସୁରଜିତ୍ ଅଲକ୍ଷ୍ୟରେ ଥାଇ ସବୁ ଲକ୍ଷ୍ୟ କରୁଥିଲା । ]

—ଅନ୍ଧାର—



## ତୃତୀୟ ଦୃଶ୍ୟ

[ ଗୋଟିଏ ଦିନର ସନ୍ଧ୍ୟା । ଦୃଶ୍ୟର ଆରମ୍ଭରେ ସୁରଜିତ୍ ଫୋନ୍ ପାଖରେ ଛିଡ଼ା ହୋଇଛି । ତା’ର କଥାରେ ଉତ୍ତେଜନା । ]

ସୁରଜିତ୍—(ଫୋନ୍‌ରେ) ·····ଏସବୁ ଖବର ଆଗରୁ ପୋଲିସ୍‌କୁ ଦେବା ଉଚିତ ଥିଲା । × × ଜାଣି ପାରି ନ ଥିଲ ? ମିଲ୍‌ର security staff ବସି କ’ଣ କରୁଛନ୍ତି ? ଏସବୁ ଖବର ସଂଗ୍ରହ କରିବା କ’ଣ ସେମାନଙ୍କର କାମ ନୁହେଁ ? ସେମାନଙ୍କର ଦାୟିତ୍ୱ ନୁହେଁ ? × × ଆଚ୍ଛା, ଠିକ୍ ଅଛି; ମୁଁ ଦେଖୁଛି ସେମାନଙ୍କୁ । ବର୍ତ୍ତମାନ ଯେମିତି ହେଉ ଏମାନଙ୍କୁ କଣ୍ଟ୍ରୋଲ କରିବାକୁ ହେବ । ମୁଁ ପୋଲିସ୍ ଏସ୍. ପି. ଙ୍କୁ ଖବର ପଠେଇଛି—ଲାଠି, ଗୁଳି, ଟିୟର୍‌ଗ୍ୟାସ୍, ଯାହା କିଛି ଦରକାର ଧରି ନେଇ ସେମାନେ ସେଠି ପହଞ୍ଚିବେ । କିନ୍ତୁ ସେମାନେ ଗଲା ପର୍ଯ୍ୟନ୍ତ ତମେ କାରଖାନାର ଅଫିସ ପାଖରେ ସମାଧାନର ବାହାନା କରି ଅଟକେଇ ରଖିଥାଅ ।

( ଫୋନ୍ ରଖିଦେଲେ । ଘର ଭିତରକୁ ପଶିଆସିଛନ୍ତି ପି. ଏ. ମହେଶବାବୁ ।)

ସୁରଜିତ—କ’ଣ, ଦେଖା ହେଲା ?

ପି. ଏ.—ହଁ, ଏସ୍. ପି. ସାହେବ ବଙ୍ଗଳାରେ ନ ଥିଲେ । ମୁଁ କ୍ଲବକୁ ଗଲି । ସେଇଠି ତାଙ୍କୁ ଚିଠି ଦେଇଆସିଲି ।

ସୁରଜିତ୍—କ’ଣ, କିଛି ବ୍ୟବସ୍ଥା କଲେ ?

ପି. ଏ.—ହଁ, ସାଙ୍ଗେ ସାଙ୍ଗେ D. S. P. ଙ୍କୁ ପଠେଇଲେ, ମାର୍କେଟରେ ରିଜର୍ଭ ପୋଲିସ ଷ୍ଟାଫ୍ ନେଇ ଯିବାକୁ କହିଲେ ।

ସୁରଜିତ୍—ଠିକ୍ ଅଛି; ଏଇଥର ସବୁ ଠିକ୍ ହୋଇଯିବ । ଶ୍ରମିକ ନେତାଙ୍କୁ ନେଇ ଜେଲରେ ପୂରେଇବା ଦରକାର ନାହିଁ । ଯେଉଁଠିକା ନେତା କେଇଟାଙ୍କୁ ଯଦି ଆରେଷ୍ଟ କରାଯାଇପାରେ···

ପି. ଏ.—Excuse me, sir ! If you allow me to speak, I will say, ଅସଲ ନେତା ଏଇଠି···

ସୁରଜିତ୍—ଏଇଠି ?

ପି. ଏ.—ଆପଣ ଯଦି କିଛି ମନେ ନ କରନ୍ତି, ତା'ହେଲେ ମୁଁ କହିବି, ଏଇ ସଞ୍ଜୟବାବୁ, ଯାହାଙ୍କୁ ଆପଣ ଘରେ ଆଶ୍ରୟ ଦେଇଛନ୍ତି, he is the storm creator. ସବୁ ଝଡ଼ ସୃଷ୍ଟି ମୂଳରେ ସେଇ ।

ସୁରଜିତ୍—ସଞ୍ଜୟ ? ନା, ନା, ଅସମ୍ଭବ । ସେ ତ ଏଇଠି···

ପି. ଏ.—ନା, ଅନ୍ତରାଳ ସମ୍ପର୍କ ସେ ଆଜି ବି ଛାଡ଼ିପାରିନାହାନ୍ତି । ମୁଁ ସବୁ ଖବର ରଖିଛି । ଆପଣ ଯଦି ଗୃହାନ୍ତି—

ସୁରଜିତ୍—ସତରେ ଯଦି ସଞ୍ଜୟ ଏହା କରୁଥାଏ, ତାହାହେଲେ···ତା'ହେଲେ ମୁଁ ତାକୁ···I will see him.

ପି. ଏ.—ଖାଲି ସିଏ ନୁହନ୍ତି, ସାର୍, ତାଙ୍କ ସାଙ୍ଗରେ ଶିଖା ଦେବୀ ମଧ୍ୟ···

ସୁରଜିତ୍—You stof it, you can go now.

ପି.ଏ.—Sorry, sir ! (ପ୍ରସ୍ଥାନ)

[ ଚିନ୍ତାଗ୍ରସ୍ତ ସୁରଜିତ୍ ଦେଖାଯିବେ ଓ ଗୋଟାଏ ସିଗାରେଟ୍ ଟାଣିଚାଲିଲେ, କିନ୍ତୁ କୌଣସି ସିଗାରେଟ୍ ଶେଷ ହୋଇପାରିଲାନି । ଶେଷରେ କ'ଣ ଭାବି ଭାବି କ'ଣ ଗୋଟାଏ ସ୍ଥିର କରି ଡାକିଲେ— ]

ସୁରଜିତ୍—ଅଗଣି !

ଅଗଣି—( ଅଗଣି ଆସିଲା ଭିତରୁ ) ମତେ ଡାକୁଥିଲେ, ଆଜ୍ଞା ?

ସୁରଜିତ୍—ସଞ୍ଜୟ କାହିଁ ?

ଅଗଣି—ମୁଁ ତ ଜାଣିନାହିଁ ।

ସୁରଜିତ୍—ତୁ ଜାଣୁ ।

ଅଗଣି—କେମିତି ଜାଣିବି ?

ସୁରଜିତ୍—କୁଆଡ଼େ ଯାଇଛ ସେ ?

ଅଗଣି—ନେଁକବାବୁ କୁଆଡ଼େ ଯାଇଚନ୍ତି ? ସେଇ କାଳୁଣ୍ଡିଆଁ ବାବୁଙ୍କ ପାଖକୁ ଯାଇଥିବେ ।

ସୁରଜିତ୍—କାଳୁଣ୍ଡିଆଁ ବାବୁ ? ସେ କିଏ ?

ଅଗଣି—ଆଜ୍ଞା, ମୁଁ କ'ଣ ଜାଣିଚି, ସେ କିଏ ? କାଳୁ ଡେଇଁ ଆସନ୍ତି ; ସେଇଥିପାଇଁ କହୁଛି, କାଳୁଣ୍ଡିଆଁ ବାବୁ ।

ସୁରଜିତ୍—କାଳୁ ଡେଇଁ··· ?

ଅଗଣି—ହଁ ଆଜ୍ଞା, ମୋ ସଦର ଗେଟ୍ ବାଟେ ଆସନ୍ତି ନାହିଁ । ଦେଖିଚେବେଳେ ଆସନ୍ତି, ପାଚେରୀ ଡେଇଁ, ପାଇପ୍ ଧରି ଏଇ ବାଟେ ଆସନ୍ତି ଆଜ୍ଞା !

[ ଅଗଣି ଝରକାପାଖ ଆସିବାର ବାଟ ଦେଖାଉଛନ୍ତି । ]

ସୁରଜିତ୍—ସଞ୍ଜୟ ପାଖକୁ ଏଇ ବାଟେ ଜଣେ ଯିବା ଆସିବା କରୁଚି ?

ଅଗଣି—ଆଜ୍ଞା, ହଁ ।

ସୁରଜିତ୍—ଆଜିଯାଏ ମୋତେ କହୁନୁ କାହିଁକି ?

ଅଗଣି— ଆଜ୍ଞା···କହୁନି···ଆଜ୍ଞା, ତାଙ୍କର କିଏ ବନ୍ଧୁବାନ୍ଧବ ଲୋକ ହୋଇଥିବେ···

ସୁରଜିତ୍ – ବନ୍ଧୁବାନ୍ଧବ ଲୋକ ଆସିବା ପାଇଁ ରାସ୍ତା ହୋଇଚି ଏଇଟା ?

ଅଗଣି—ଆଜ୍ଞା !

ସୁରଜିତ୍—Scoundrel ! ବାହାର, ଏଠୁ ବାହାର···

( ଅଗଣି ଚାଲିଯାଉଥିଲା )

ସୁରଜିତ୍—ଏଇ, ଯାଉଚୁ କୁଆଡ଼େ ? ଶୁଣ୍ ! ଡ୍ରାଇଭର୍‌କୁ ପଠା, କାର୍ ବାହାର କରିବ ମୁଁ ଯାଉଚି ।

ଅଗଣି---ଆଜ୍ଞା, ଗାନ୍ଧି ନେଇନାହାନ୍ତି ।

ସୁରଜିତ୍—ତା'ହେଲେ ସେ କୋଉଆଡ଼େ ଗଲେ ?

ଅଗଣି—ଫେରିଆସିଲେ ବଲେ ଜଣାପଡ଼ିବ ନାହିଁ ।

ସୁରଜିତ୍—ଚୁପ୍ କର । ତାଙ୍କରେ ଆଉ କିଏ ଯାଇଚି ?

ଅଗଣି—ମୁଁ ତ ଭାବିଥିଲି, ଶିଖା ଦେବୀ···

ସୁରଜିତ୍—ଶୁଣ୍ ! ସେ ଫେରିଆସିଲେ କହିବୁ, ମୋ ସାଙ୍ଗରେ ଦେଖା କରିବ । ବିଶେଷ ଜରୁରୀ କଥା ଅଛି ।

[ ସୁରଜିତ ଚାଲିଯାଇଛି ଭିତରକୁ, ପରେ ପରେ ବାହାରୁ ଆସିଛି ଶିଖା

ଶିଖା---ଅଗଣି, ଅଗଣି !

ଅଗଣି—ମା !

ଶିଖା—ଏଠିକି ଗୋଟେ ଝିଅ ଆସିଥିଲା ? ସାଙ୍ଗରେ ଗୋଟିଏ ବୁଢ଼ା ମିଆଁ···

ଅଗଣି—ଭାରି ଭଲ ଝିଅ, ମା ! ମା ଛେଉଣ୍ଡ ମୁସଲମାନ ଝିଅ । ହେଲେ କ'ଣ ହେଲା, ଯେମିତି ମତେ ଦେଖିଚି, ମୋ ଗୋଡ଼ତଳେ ନମ୍ର ହୋଇ ପଡ଼ିଗଲା ତ··· ଘରଝାଡ଼ୁ, ବିଛଣାପତ୍ର ସଜା, ମୋଠୁ ଛଡ଼େଇ କରିଗଲା । କହିଲା, "ବୁଢ଼ା, ମୁଁ ପରା ଅଛି, ତମେ ଜରନା ଏସବୁ ।" ସତେ ଯେମିତି ନିଜ ଘର ; କି କଥା, କି ସଣ୍ଣା, ଆ-ହା-ହା-ହା !

ଶିଖା—ଥାଉ, ସାର୍ଟିଫିକେଟ୍ ମାଗୁନି । କାହା ପାଖକୁ ଆସିଥିଲା ସେ ?

ଅଗଣି—କାହା ପାଖକୁ ଆଉ ? ଆମ ବାବୁଙ୍କ ପାଖକୁ ।

ଶିଖା—( ନ ବୁଝିଲା ପରି ଚାହିଁଲା )

ଅଗଣି —ଆମ ଲେଖକ ବାବୁ ମ !

ଶିଖା—ସେ କ'ଣ ସ୍ୱାଙ୍କୁ ଚହ୍ନେ ?

ଅଗଣି---ଚହ୍ନେନି ତ ଏଠିକି ତାଙ୍କ ପାଖକୁ ଆସିଲା କେମିତି ? ଚିହ୍ନିଲେ, ଏ

ବାବୁଟା କ'ଣ ତାଙ୍କୁ ଚିହ୍ନେଇଦେଲ ! କ'ଣ କେଜାଣି, ତାଙ୍କୁ କହୁଥିଲ ଯେ, ଚ' ଅଣି ଆସି ଦେଖେ ତ ସେ ନାହାନ୍ତି ।

ଶିଖା—କାହାକ ଯେମାନେ ଏଠିକି ଆସିଥିଲେ ?

ଅଗଣି—ବଡ଼ି ପୋଡ଼ିଗଲା; ଟିକିଏ ଆଗ୍ରା ନବାକୁ ଆସିଥିଲେ ।

ଶିଖା—ଆଉ ସେମାନେ କେବେ ଏଠିକି ଆସିଥିଲେ ?

ଅଗଣି—ନାହିଁ ତ ମା, ଆଉ ତ କେବେ ଦେଖିନି ।

ଶିଖା—ସଞ୍ଜୟବାବୁ ଏ ଯାଏ ଫେରନାହାନ୍ତି ?

ଅଗଣି—ନା, କୁଆଡ଼େ ମନଇଚ୍ଛା ଘୁରୁଚନ୍ତି । ମୁଁ ଭାବିଥିଲି, ତମ ସାଙ୍ଗରେ ଯାଇଥିବେ । ସେ ତାହାହେଲେ ଏକା ଏକା ବୁଲୁଚନ୍ତି । ଏ ପୁଣି ଗୋଟାଏ ରୋଗ ବାହାରିଲା ।

ଶିଖା—ଜଉଭାଇଙ୍କୁ କହିବୁ, ମୁଁ ଆସିଥିଲି, ପୁଣି କାଲି ଆସିବି ।

( ଚାଲିଯାଉଥିଲା···ପୁଣି ଫେରି··· )

ଶିଖା—ହଁ, ଅଗଣି, ସଞ୍ଜୟ ଆସିଲେ କହିବୁ···ନା···ଥାଉ ।

( ବାହାରକୁ ଚାଲିଗଲା ଜୋର୍‌ରେ )

ଅଗଣି—[ ଠିଆ ହୋଇଥାଏ, ସବୁ ଯେପରି ଅବୁଝା ତା' ପାଖରେ । ଘଡ଼ି ୯ଟା ବାଜିଲା । ସେ ଫେରିଲାବେଳକୁ ଦେଖିଲା, ବାହାରୁ ଆସୁଛନ୍ତି ସଞ୍ଜୟ । ଚାଲିଯାଉଥିଲା ସଞ୍ଜୟ ଘର ଭିତରକୁ ]

ଅଗଣି—କୁଆଡ଼େ ଯାଇଥିଲ, ବାବୁ ? ବାବୁ ଘର ଖୋଜୁଥିଲେ ଆପଣଙ୍କୁ । ଦେଖା କରିବାକୁ କହିଚନ୍ତି ।

ସଞ୍ଜୟ—କହିବୁ, ମୁଁ କାଲି ଦେଖା କରିବି ।

( ସୁରଜିତ୍ର ଉପରୁ ପଶିଆସିଲି । )

ସୁରଜିତ୍—ଅଗଣି, ସଞ୍ଜୟବାବୁଙ୍କର ଖାଇବା ପିଇବାର ବ୍ୟବସ୍ଥା କର ।

ଅଗଣି—(ଗୃହ୍ନକଗଣ ଭିତରକୁ )

ସୁରଜିତ୍—କାହା ହୁକୁମରେ ତୁମେ ବାହାରକୁ ଯାଇଥିଲ ?

ସଞ୍ଜୟ—ମୋତେ ପଚାରୁଚନ୍ତି ?

ସୁରଜିତ୍—ହଁ, କିଏ ଅଛ ଆଉ ଏ ଘରେ ?

ସଞ୍ଜୟ—ବାହାରକୁ ଗଲେ କାହାର ହୁକୁମ ନବାକୁ ହବ, ଇମିତି କିଛି କଣ୍ଟ୍ରାକ୍ଟ ତ ଆଜିଯାଏ ମୁଁ ଜାଣିନ ।

ସୁରଜିତ୍—ଜାଣିନ କହୁ ଫାଙ୍କିଦବାକୁ ବସିଚ ?

ସଞ୍ଜୟ—ଫାଙ୍କିଦବାର କିଛି ଦରକାର ଅଛି ବୋଲି ମନେ କରୁନ ତ !

ସୁରଜିତ୍—ତା ହେଲେ ଗାଡ଼ି ନେଇ ଯିବାକୁ avoid କରୁଚ କାହିଁକି ? ପାପର ସାକ୍ଷୀ ରଖିବାକୁ ଚାହୁଁନା···ଏଇଆ ତ !

ସଞ୍ଜୟ—ପାପର ସାକ୍ଷୀ ?

ସୁରଜିତ୍—ଡ୍ରାଇଭର ଗଲେ କାଲେ ତମର ଗତିବିଧି ଜାଣିବ, ଏଇ ତମର ଭୟ···

ସଞ୍ଜୟ—ନା, ସେ ଭୟ ମୋର ନାହିଁ । ମୁଁ କେଉଁର କି ତକାୟତ ନୁହେଁ । ବାହାରକୁ ଯିବାର ଇଚ୍ଛା ହେଲା, ଗଲି । କିଏ କ'ଣ ଭାବବ, ସେ ଖିଆଲ କରିନ ।

ସୁରଜିତ୍ — ଏଣିକି ଖିଆଲ ରଖିବାକୁ ପଡ଼ିବ ।

ସଞ୍ଜୟ—ଚେଷ୍ଟା କରବ ।

ସୁରଜିତ୍—ଖାଲି ଚେଷ୍ଟାକ ନୁହେଁ···

ସଞ୍ଜୟ—ଆଉ କ'ଣ ?

ସୁରଜିତ୍—ମୋର ବିନା ଅନୁମତିରେ କୁଆଡ଼େ ଯିବ ନାହିଁ ।

ସଞ୍ଜୟ—କାହିଁକି ?

ସୁରଜିତ୍—ସବୁ କଥାରେ 'କାହିଁକି'ର ଜବାବ ଆଶା କରନ । ତମେ ଭୁଲିଯାଉଚ ସେ ତମେ ସୁରଜିତ୍ ଚୌଧୁରୀର ଜଣେ employee. ତଥାପି ତମକୁ ସେତିକି

ସ୍ୱାଧୀନତା ଦିଆଯାଇଛି, ତାହା ଅନ୍ୟମାନଙ୍କ ତୁଳନାରେ ଢେର ବେଶି । ତା'ଠୁ ବେଶି ଆଶା କରନା ।

ସଞ୍ଜୟ—ଯଦି ଆଶା କରେ, ସେ କ'ଣ ଅନ୍ୟାୟ ହବ ?

ସୁରଜିତ୍—ମନେରଖ ସଞ୍ଜୟ, ଜଣେ ବନ୍ଧୁ ଶୁଭକାଙ୍କ୍ଷୀ ହିସାବରେ ସୁରଜିତ୍‌ର ଚେହେରାଟା ଆଜିଯାଏ ତମେ ଦେଖିଆସିଛ । ଶତ୍ରୁ ହୋଇଉଠିଲେ ସେ କେତେ ହିଂସ୍ର ହୋଇପାରେ, ତା ତମେ ଜାଣନା । ତା ଜାଣିବାର ଦୁଃସାହସ ତମେ କର ନାହିଁ । ଚୌଧୁରୀ ବଙ୍ଗଳାର ପଥର କାନ୍ଥ ଭିତରେ ତମର ଚିତ୍କାରକୁ ଚିରଦିନ ପାଇଁ ମିଶେଇଦବାକୁ ମୋତେ ବେଶି କଷ୍ଟ କରିବାକୁ ପଡ଼ିବ ନାହିଁ ।

ସୁରଜିତ୍ ଚାଲିଗଲା ବାହାରକୁ । ସଞ୍ଜୟ କିଛି ସମୟ ଠିଆ ହେଲା । ବାଲକୋନି ପାଖକୁ ଗଲା । ମଟର start ହୋଇ ଚାଲିଯିବାର ଶବ୍ଦ··· ଅଗଣି ଭିତରୁ ଆସିଲା ।

ଅଗଣି—ବାବୁ ! ଆରେ, ଗଲେ କୁଆଡ଼େ ? ଓଃ ହୋ···ଆଉ ପାରିହବନି । ବଢ଼ା-ବଢ଼ି କଲି, ଖାଇବା ଲୋକର ଦେଖା ନାହିଁ ! ପାରିହବନି ଆଉ ।

( ବାଲକୋନିର୍ stageକୁ ଆସିଲି )

ଅଗଣି—( ସଞ୍ଜୟକୁ ଦେଖି ) ତମେ ବାବୁ ଏଇଠି ଅଛ, ଟିକେ ଜବାବ ଦେଉନା ! ଆସ, ଖାଇବ ଆସ । ଆସ···

ସଞ୍ଜୟ—ନା ।

ଅଗଣି—ଅମାନିଆ ହୁଅନି ବାବୁ, ଆସ । ଦେଖିଲ, କ'ଣ ହେଲଣି ତୁମ ଚେହେରା ।

ସଞ୍ଜୟ—ତୋର ସେଥିରେ କ'ଣ ଅଛି ? କହିଲି ପରା ମୁଁ ଖାଇବିନି । ଚାଲି ଯା···

( ସଞ୍ଜୟ ଭିତରକୁ ଚାଲି ଯାଉ ଯାଉ ଲାଇଟ୍ ଲିଭିଲା )

—ଅନ୍ଧାର—



## ଚତୁର୍ଥ ଦୃଶ୍ୟ

(ପି. ଏ. ହାତରେ କେତେଗୁଡ଼ିଏ ଫାଇଲ୍ ଧରି ଠିଆ ହୋଇଥିଲେ। ସୁରଜିତ୍ ବଉରକର ମନୋଭାବ ନେଇ ପି.ଏ. ପାଖରୁ ଫାଇଲ୍‌ଗୁଡ଼ାକ ନେଇ ଦେଖୁଥିଲା। ଗୋଟାଏ ଫାଇଲ୍ ଜୋର୍‌ରେ ଫୋପାଡ଼ିଦେଲା...

ସୁରଜିତ୍—I don't like to hear explanation. I just want to know the fact. ମୁଁ ନ ଥିଲାବେଳେ ତୁମେ ମିଟିଂ ଡାକିଲ କାହିଁକି ?

ପି.ଏ.—Excuse me, sir ! ମ୍ୟାନେଜର କହିଥିଲେ।

ସୁରଜିତ୍—ସେଇଦିନ ମିଟିଂ ଡାକିବାକୁ !

ପି.ଏ.—ହଁ, ସେଇଦିନ।

ସୁରଜିତ୍—But he positively knows that I am out of station.

ପି.ଏ.—ଯେଉଁଦିନ ଆପଣଙ୍କର ଫେରିବାର କଥା ଥିଲା, ସାର୍ ! ସେଇଥିପାଇଁ ମିଟିଂଟା...

ସୁରଜିତ୍—I see...(pause) ବେଶ୍, ଯଦି ଆସି ନ ପାରିଲି, ମିଟିଂଟା cancel କରାହୋଇ ପାରିଥାଆନ୍ତା !

ପି.ଏ.—ଅନ୍ୟ ମେମ୍ବରମାନେ ମିଟିଂ କ୍ୟାନ୍‌ସେଲ୍ କରିବା ପ୍ରୋଗ୍ରାମରେ କେହି ରାଜି ହେଲେ ନାହିଁ। ନିୟମ ଅନୁସାରେ 2 3rd ମେମ୍ବର ଉପସ୍ଥିତ ରହିଲେ ମିଟିଂ ଚାଲିବା କଥା।

ସୁରଜିତ୍—ଆଃ, ଚୁପ୍‌କର। ନିୟମ, ରେଗୁଲେସନ୍ ଏସବୁ ମୋତେ ବୁଝାଇବା ଦରକାର ନାହିଁ। ମୁଁ ନ ଥିବାର ସୁଯୋଗ ନେଇ ଅନ୍ୟ ପାର୍ଟନର୍‌ମାନେ ମିଟିଂଟା କରିଯାଇଛନ୍ତି। ରିଜଲ୍ୟୁସନ୍‌ଟା ନିଶ୍ଚୟ ମୋର ବିରୁଦ୍ଧରେ ହୋଇଛି ?

ପି.ଏ.—ଆଜ୍ଞା, ଫ୍ୟାକ୍ଟରୀ ବନ୍ଦ ହେବାଦିନୁ ଆଜିଯାଏ ଅଂଶୀଦାରମାନେ କୌଣସି ଡିଭିଡେଣ୍ଡ ପାଉନାହାନ୍ତି । ମାର୍ଚ୍ଚ ଭିତରେ ଯେସବୁ clear up ନ ହେଲେ, ସେମାନେ ହାଇକୋର୍ଟରେ ରିଟ୍ କରିବେ । ତା’ଛଡ଼ା କମ୍ପାନୀରେ ସରକାରଙ୍କର ଯେଉଁ 40% ସେୟାର ରହିଛି, ସେଇଟା ମଧ୍ୟ ସରକାରୀ ମୁଖପାତ୍ର ଉଠାଇ-ନେବାକୁ ସ୍ଥିର କରିଛନ୍ତି ।

ସୁରଜିତ୍—ଆକାଉଣ୍ଟ ପତ୍ର ସେମାନଙ୍କୁ ଦେଖାଇ ଦିଆହୋଇଛି ?

ପି.ଏ.—ହଁ, ସାର୍ ! ଆକାଉଣ୍ଟ ଦେଖି ସେମାନେ ସନ୍ଦେହ ପ୍ରକାଶ କରିଛନ୍ତି । ସେ ସବୁ ସିଜ୍ କରିନେବାପାଇଁ ଭିଜିଲାନ୍ସ ଡିପାର୍ଟମେଣ୍ଟକୁ ମୁଭ୍ କରିଛନ୍ତି ।

ସୁରଜିତ୍—ଭିଜିଲାନ୍ସକୁ ମୁଭ୍ କରିଛନ୍ତି ! ତୁମେ କିପରି ଜାଣିଲ ?

ପି. ଏ.—ଭିଜିଲାନ୍ସ ଷ୍ଟାଫ୍ ତ ପରଦିନ ଆସିଥିଲେ । କିନ୍ତୁ ସେଦିନ ଆମେ ଆଗରୁ ଖବର ପାଇଯାଇଥିବାରୁ ବାଧ୍ୟ ହୋଇ ସେମାନେ ଫେରିଗଲେ ।

ସୁରଜିତ୍—ଠିକ୍ କରିଛ । ଆଜି ଯାଇ ସେମାନଙ୍କ ପାଇଁ ଯାହା ବ୍ୟବସ୍ଥା କରିବା କଥା ମୁଁ କରୁଛି । ତମେ ଗୋଟାଏ କାମ କର ।

ପି.ଏ.—ସାର୍ !

ସୁରଜିତ୍—ମୋ ଅନୁପସ୍ଥିତିରେ ସେୟାର୍ ହୋଲଡର୍‌ମାନଙ୍କର ଯେଉଁ ମିଟିଂ ହୋଇ-ଯାଇଛି, ସେଟା କ୍ୟାନ୍‌ସେଲ୍ କରିଦେବାପାଇଁ ମୁଁ ମେଡିକାଲ୍ ସାର୍ଟିଫିକେଟ୍ ଦେଇଦେଉଛି । ସେଇଟା ଯେମିତି back dateରେ entry ହୁଏ । ଆଉ account officerଙ୍କୁ କହିବ, ସେ ଆସି ମୋତେ ଦେଖା କରିବେ ।

ପି.ଏ.—ସାର୍, ଏ ଫାଇଲ୍‌ଗୁଡ଼ାକ…

ସୁରଜିତ୍—ଆଃ, ସବୁବେଳେ ଖାଲି ଫାଇଲ୍, ଫାଇଲ୍ ଫାଇଲ୍ ! ରଖିଦେଇ ଯାଅ ସେଇଠି । ( ବିରକ୍ତ ହୋଇ କହୁଛି )

[ ପି.ଏ. ଫାଇଲ୍ ଥୋଇଦେଇ ବାହାରକୁ ଚାଲିଗଲେ । ପଶିଆସିଛନ୍ତି ବାହାରୁ ମଳୟା ଦେବୀ । ]

ମଳୟା ଦେବୀ—ଆଚ୍ଛା ସୁର, ଗୋଟାଏ ଡିସିସନ୍ ନେବାକୁ ପରା ତୁମକୁ ଗୋଟାଏ ମିନଟ୍ ଲଗେ ? ତମ ବୋଉ ତ କାଲି ଗାଁରୁ ଚିଠି ଲେଖିଛନ୍ତି । କାମଟା ଛୁଟିଗଲେ ତୁମ ମୁଣ୍ଡରୁ ଗୋଟାଏ ବୋଝ ଓହ୍ଲାଇଯିବ । ତମର ଆଉ ଏଥିରେ ଭାବିବାର କ'ଣ ଅଛି ?

ସୁରଜିତ୍—କୋଉ କଥା କହୁଛନ୍ତି, ମାଉସୀ ?

ମଳୟା—ଏଇ ବାହାଘର କଥା ।

ସୁରଜିତ୍—ବାହାଘର ?

ମଳୟା—ହଁ, ଶିଖାର ।

ସୁରଜିତ୍—ହୋଇପାରିବ ନାହିଁ ।

ମଳୟା—ମାନେ, ଏଇ କେତେଦିନ ତଳେ କହିଲ, ମତେ ଟିକିଏ ସମୟ ଦିଅନ୍ତୁ, ମୁଁ ଟିକେ ଭାବି ଦେଖିବି । ଏବେ କହୁଛ କ'ଣ ନା ହୋଇପାରିବ ନାହିଁ !

ସୁରଜିତ୍—ଭାବିବାକୁ ସମୟ କାହିଁ ?

ମଳୟା—ଏଇ କଥା ଭାବିବାକୁ କ'ଣ ସମୟ ଦରକାର ?

ସୁରଜିତ୍—ଆପଣ କିଛି ବୁଝିପାରିବେ ନାହିଁ, ମାଉସୀ, ମୁଁ ଯେ କି ଟ୍ରବଲ୍‌ରେ ଅଛି···

ମଳୟା—ଟ୍ରବ୍‌ଲ୍ ?

ସୁରଜିତ୍—ଏଇ ବଜିନେସ୍, ଏଇ ଫାକ୍‌ଟରୀ, ଏଇ ଶ୍ରମିକ, ସେୟାର୍ ହୋଲ୍‌ଡର୍, ସେଲ୍‌ସ୍ ଟ୍ୟାକସ, କୋର୍ଟ କଚେରୀ, ଟ୍ରିବ୍ୟୁନାଲ୍···ଇସ୍, କି ଯେ ଜଞ୍ଜାଳ, ଆପଣ ବୁଝିପାରିବେ ନାହିଁ, ମାଉସୀ ! I am fed up, really I am fed up.

ମଳୟା—ଜଞ୍ଜାଳ ତ ତୁମର ସବୁବେଳେ । ତା'ବୋଲି···

ସୁରଜିତ୍—ମୋ ଅସୁବିଧା ଆପଣ ବୁଝିପାରିବେନି, ମାଉସୀ !

ମଳୟା—( ବିରକ୍ତ ହୋଇ ) ନା, ସୁବିଧା ଅସୁବିଧା ବୁଝିବାକୁ ମୁଁ ଚାହେଁନା । ଆଉ ମୋର ଧୈର୍ଯ୍ୟ ନାହିଁ, ସୁର ! ଆଜି ମୁଁ ତମଠୁ ଶେଷ କଥା ଶୁଣିବାକୁ ଚାହେଁ ।

ସୁରଜିତ୍—ଶେଷ କଥା ?

ମଳୟ୍ରା—ହଁ, ଶେଷ କଥା···

ସୁରଜିତ୍—( ଗୋଟାଏ ସିଗାରେଟ୍ ଲଗାଇଲା ) ଯଦ୍ୟାପି ଆପଣ ଯଦି ଶେଷ କଥା ଶୁଣିବାକୁ ଚାହାନ୍ତି, ତେବେ ଶୁଣନ୍ତୁ—ଆପଣଙ୍କର ଯେତେବେଳେ ଆଉ ଅପେକ୍ଷା କରିବାକୁ ଧୈର୍ଯ୍ୟ ନାହିଁ, ମୁଁ କହିଦେଉଛି, ମୋର ବି ସେଥିରେ ଆଗ୍ରହ ନାହିଁ ।

ମଳୟ୍ରା—ଜରୁ !

ସୁରଜିତ୍—ହଁ, ମାଉସୀ ! ଆପଣ ଭାବିଥିଲେ, ସାମାନ୍ୟ ଗୋଟାଏ ଟଙ୍କାରେ ଗୋଟାଏ ବଡ ଲଟାଣ୍ଟ କିଣିନେବେ । ହେଲେ, it is impossible.

ମଳୟ୍ରା—ସୁର ! କ'ଣ ତମେ କହୁଚ ! ଆଜିଯାଏ ଶିଖାକୁ ନେଇ ତମେ କାହିଁକି ଏ ଖେଳ ଖେଳୁଥିଲ ?

ସୁରଜିତ୍—ଖେଳ ମୁଁ ଖେଳିନି, ମାଉସୀ, ମୋତେ ନେଇ ଖେଳ ଖେଳିବାକୁ ସମସ୍ତେ ଚେଷ୍ଟା କରିଚନ୍ତି । ଗୋଟାଏ ନର୍ଫ୍ବ ବଲ୍ ଧରି ସିଏ ମୁଆଡ଼େ ପାଇଚ ମୋତେ ଗଡ଼େଇନେଇଚ । ମୋର ଏଇ ବ୍ୟାଙ୍କ୍ ବାଲାନ୍ସ୍, ମୋର ଏଇ social status···ସ୍ୱାକୁଇ ଦେଖି ମୋ ପାଖକୁ ଆସିଚନ୍ତି ସମସ୍ତେ । ଲକ୍ଷ୍ୟ ସମସ୍ତଙ୍କର ଗୋଟାଏ···ସ୍ୱାର୍ଥ !

ମଳୟ୍ରା—ସ୍ୱାର୍ଥ ! ଏକଥା ତମେ କହିପାରିଲ ?

ସୁରଜିତ୍—ହଁ, ସ୍ୱାର୍ଥ । ତା ଛଡ଼ା ଆଉ କ'ଣ ? କିଏ ଆସିଚ ଟିକେ ଦୟା ପାଇଁ, କିଏ ଆସିଚ ଚାକିରି ପାଇଁ, କିଏ ଆସିଚ ଟଙ୍କା ପାଇଁ, ଆଉ କିଏ ଅବା ଆସିଚ ନିଜର ବାଳନନ୍ଦିନୀକୁ ମୋ ଗଳାରେ ଛନ୍ଦିଦେବା ପାଇଁ ।

ମଳୟ୍ରା—ମୁଁ ତମ ଗଳାରେ ଛନ୍ଦିଦେବାକୁ ଚାହେଁ ! ଶିଖା ଭଳି ଝିଅକୁ କେତେ I. A. S. ଅଫିସର, କେତେ ଡାକ୍ତର, କେତେ ଇଞ୍ଜିନିୟର propose କରିଚନ୍ତି, ଜାଣିଚ ?

ସୁରଜିତ୍—ତମେ ବି ବୋଧହୁଏ ଜାଣିନ, ମାଉସୀ, କେତେ I. A. S. ଅଫିସର, ଡାକ୍ତର ଇଞ୍ଜିନିୟର, ବାରିଷ୍ଟର ଏଇ ସୁରଜିତ୍ ଚୌଧୁରୀଙ୍କୁ ଜାମାତା

କଣତାକୁ ଆଣି ଜଣାଣ ଦୋ.ଗ ଏଇ ଦୁଆରୁ ଫେରଯାଇଚନ୍ତି । ସୁରଜିତ୍ ଚୌଧୁରୀ କାହାର ହାତରେ ଧରା ଦେଇନ ।

ମଳୟା—( କାନ୍ଦ କାନ୍ଦ ) ତମ ମନରେ ଏଇୟା ଥିଲା, ସୁରଜିତ୍ ? ସହର ସାରା ତ ସମସ୍ତେ ଜାଣନ୍ତି, ଶିଖା ସଙ୍ଗେ ତୁମର engagement ହେଇଯାଇଚ । ଆଜି ମୁଁ ଯୋଯାଇଫିଟରେ ମୁହଁ ଦେଖାଇବି କମିତ ? ଲୋକେ ମତେ କ'ଣ କହିବେ ?

ସୁରଜିତ୍—ଲୋକେ କ'ଣ କହିବେ ବୋଲି ବାଧ ହୋଇ ଯେ ମୁଁ ଶିଖାକୁ ଗ୍ରହଣ କରିବି, ଏ ଦୁର୍ବଳତା ଅନ୍ତତଃ ମୋର ନାହିଁ ।

ମଳୟା—ମୁଁ ତମ ନାଁ'ରେ case କରିବି !

ସୁରଜିତ୍—ମୋ ନାଁରେ case କରିବେ ? ହାଃ…ହାଃ…ଆପଣ ନିଶ୍ଚିନ୍ତ ରୁହନ୍ତୁ, ମାଉସୀ, କୋର୍ଟକୁ ମୁଁ ଏକା ଯାଉନ, ଆପଣଙ୍କୁ ଓ ଆପଣଙ୍କ ଝିଅକୁ ବି ମୋ ସାଙ୍ଗରେ ଯିବାକୁ ପଡ଼ିବ ଆପଣଙ୍କର ଉପସ୍ଥିତ ଥେଇ କାଠଗଡ଼ାକୁ ।

ମଳୟା—ବେଶ୍, ଯେଉଠି ତା'ହେଲେ ଆମର ଦେଖା ହେବ ।

[ ମଳୟା ଦେବୀ ବେଗି ବାହାରକୁ ଚାଲିଗଲେ । ସୁରଜିତ୍ କିଛି ସମୟ ରହି, ସିଗାରେଟ୍ ଟାଣି ତା'ପରେ ଚାଲିଗଲା ତା' ଘରଆଡ଼କୁ ।

ଝରକାରେ ଦେଖାଗଲା ଗୋଟାଏ ଛାୟା । ତା'ପରେ ଖୋଲିଗଲା ଝରକା । ଦେଖାଗଲା, ଆସୁଚି ବିରୂପାକ୍ଷ । ସଞ୍ଜୟ ବାହାରୁ ଆସି ଠିଆହେଲା ସୋଫା ପାଖରେ । ]

ବିରୂପାକ୍ଷ—ସର୍ବନାଶ ହୋଇଛି, ଜୟୀ, ସର୍ବନାଶ ହୋଇଛି !

ସଞ୍ଜୟ—ବିରୂପାକ୍ଷ !

ବିରୂପାକ୍ଷ—ଆବ୍ଦାକାନ୍‌ର ଅବସ୍ଥା ସାଙ୍ଘାତିକ ।

ସଞ୍ଜୟ—ଆବ୍ଦାକାନ୍ ? କ'ଣ ହେଲା ? କ'ଣ ହେଲା, ବିରୂପାକ୍ଷ ?

ବିରୂପାକ୍ଷ—ମେସିନ୍ ଭିତରେ ପଡ଼ି ଗୋଡ଼ଟା କଟିଯାଇଛି ।

ସଞ୍ଜୟ—( ଆତଙ୍କରେ ଚତ୍କାର କରଉଛି । )

ବିରୂପାକ୍ଷ—ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ସଞ୍ଜୟ ! ବୁଢ଼ାଲୋକ, ଗୋଡ଼ହାତ ଥରୁଛି, ମୁଣ୍ଡ ବୁଲାଇଦେଲା ।

ସଞ୍ଜୟ—ବିରୂପାକ୍ଷ ! ଆବ୍ବାଜାନ୍‌କୁ କାରଖାନା ଭିତରକୁ ଯିବାକୁ ଦେଲ କାହିଁକି ?

ବିରୂପାକ୍ଷ—ମେ କାହାର କଥା ଶୁଣିଲାନି । ତୁ ଆସିଲୁ ପରେ ଘରକୁ ଅମୀନା ଏକା । ଯିଲେଇ ମେସିନ୍ ଧରି କେତେ ବା ରୋଜଗାର ତା'ର ? ବାଧ୍ୟ ହୋଇ ତାକୁ କାରଖାନା ଯିବାକୁ ପଡ଼ିଲା ।

ସଞ୍ଜୟ—ଏ ବୟସରେ···

ବିରୂପାକ୍ଷ—ଭାଗ୍ୟ ଉପରେ ମଣିଷର ହାତ ନାହିଁରେ ଜୟୀ ! ନ ହେଲେ ଅବଦୁଲ୍ଲା ବୁଢ଼ା ବାପଟାକୁ ଅସହାୟ କରି ଗୋଟାଏ ମାଇକିନା ଧରି ରାତାରାତି ରେଙ୍ଗୁନ୍ ପଳାଇଥାଆନ୍ତା ! ସେଇ ଅଘାତରେ ବୁଢ଼ା ହୁଏତ ମାଟିରେ ମିଶିଥାନ୍ତା । ହେଲେ ଖାଲି ତୋରି ମୁହଁକୁ ଚାହିଁ ସେ ବଞ୍ଚିରହିଲା, ଜୟୀ ! ତୋରି ପାଇଁ ନିଜ ରକ୍ତର ଅବଦୁଲ୍ଲାକୁ ଭୁଲିଲା, ଆଉ ତୁ···

ସଞ୍ଜୟ—ବିରୂପାକ୍ଷ ! !

ବିରୂପାକ୍ଷ—ଅବଦୁଲ୍ଲାଟା ଥିଲା ମୂର୍ଖ, ମାତାଲ, ଡ୍ରାଇଭର ; ହେଲେ ତୁ···ତୁ ପରା ଶିକ୍ଷିତ ! ବଡ଼ଘରେ ଅଛୁ ବୋଲି ସେ କ'ଣ ତତେ ହାତ ପତେଇ ମାଗୁଥିଲା ?

ସଞ୍ଜୟ—ବିରୂପାକ୍ଷ ! ମୋର ଭୁଲ ହୋଇଛି, ମୋର ଭୁଲ ହୋଇଛି । ଆବ୍ବାଜାନ୍‌କୁ ଛାଡ଼ି ମୋର ଆସିବା ଭୁଲ ହୋଇଛି । ଅମୀନା···ତା କଥା ବି ମୁଁ ଭୁଲିଯାଇଛି ।

ବିରୂପାକ୍ଷ—ଏଠିକି ଯିଏ ଆସିବ, ସେ ଭୁଲ କରିବ । ତୁ ବି କରିଛୁ ।

ସଞ୍ଜୟ—ମୁଁ ଚାଲିଯିବି, ମୁଁ ତୋରି ସାଙ୍ଗରେ ଚାଲିଯିବି । ଆବ୍ବାଜାନ୍‌କୁ କହିବି,

ମୋର କସୁର ହୋଇଛି । ବିରୂପାକ୍ଷ, କାହା କମାରେ ଗ୍ରୁଚ୍ଛି ଅସିଛି ଆବ୍‌ବାଜାନକୁ ?

ବିରୂପାକ୍ଷ—ମେଡ଼ିକାଲରେ । ପାଖରେ ଅଛି ଅମୀନା ।

ସଞ୍ଜୟ—ଅବଦୁଲ୍ଲା ଯାହା କରିପାରିଲା ନାହିଁ, ମୁଁ ଯାହା ପାରିଲି ନାହିଁ···ଗ୍ରୁ··· ଗୁଲ୍, ମୁଁ ଯିବି ।

ବିରୂପାକ୍ଷ—ଆବ୍‌ବାଜାନ୍ ପାଇଁ ରକ୍ତ ଦରକାର ।

ସଞ୍ଜୟ—ରକ୍ତ ?

ବିରୂପାକ୍ଷ—ହଁ, ଅନ୍ତତଃ ଟଙ୍କା ଦ'ଶହ ଯୋଗାଡ଼ କରିପାରିବୁ ?

ସଞ୍ଜୟ—ଦୁଇଶ' ଟଙ୍କା ? ପାରିବି ।

ବିରୂପାକ୍ଷ—ବେଶ୍, ତା'ହେଲେ ମୁଁ ଯାଉଛି, ସେଇଠି ତତେ ଅପେକ୍ଷା କରୁଛି ।

[ ବିରୂପାକ୍ଷ ଗ୍ରୁଲିଗଲା ପରେ ସଞ୍ଜୟ ଚୁପ୍ ହୋଇ ବସିରହିଲା । ତା କାନରେ ଶୁଣାଗଲା ଆବ୍‌ବାଜାନର ଶେଷ କଥାଗୁଡ଼ାକ । କଥା ଶେଷ ହେବା ବେଳକୁ ସଞ୍ଜୟ ଚିତ୍କାର କରିଉଠିଲା "ଆବ୍‌ବାଜାନ"···ଦେଖେବେଳକୁ ଆବ୍‌ବାଜାନର ଛାୟା ତାର ଆଖି ଆଗରୁ ଲୁଚିଯାଇ ସେଠି ଠିଆ ହୋଇଛି ସୁରଜିତ୍ ]

ସୁରଜିତ୍—କ'ଣ ହେଇଚ, ସଞ୍ଜୟ ? ଏମିତ ଚିତ୍କାର କରିଉଠିଲ ? କାହାକୁ ଡାକୁଚ ?

ସଞ୍ଜୟ—(ଯେମିତ ସ୍ୱପ୍ନରୁ ଫେରିଆସିଛି) ମୁଁ ଆପଣଙ୍କୁ ଖୋଜୁଥିଲି । ମୋର କିଛି ଟଙ୍କା ଦରକାର ଅଛି ।

ସୁରଜିତ୍—ଟଙ୍କା ?

ସଞ୍ଜୟ—ମୋର ଜଣେ ଆତ୍ମୀୟ ହସ୍ପିଟାଲରେ । ତାଙ୍କର ଚିକିତ୍ସା ପାଇଁ ଦୁଇଶହ ଟଙ୍କା ଦରକାର ।

ସୁରଜିତ୍—ବାଃ ଚମତ୍କାର ! ଏ ଘରେ ରହି ତମେ ବି ବଦାନ୍ୟ ହେଇଉଠିଲଣି ! ହଁ, ହବ ନାହିଁ କାହିଁକି ? ଚୌଧୁରୀ ବଙ୍ଗଳା ମାଟିର ଗୁଣ ।

ସଞ୍ଜୟ—ସୁରଜିତବାବୁ ! ମୋ ପରିସ୍ଥିତି, ମୋ ଅବସ୍ଥା ଜାଣିଥିଲେ ଆପଣ ଏ କଥା କହି ନ ଥାନ୍ତେ ।

ସୁରଜିତ୍—ତମେ କ'ଣ ଭାବିଚ, କୁଳବସ୍ତିର ସମସ୍ତଙ୍କ ପାଇଁ ସୁରଜିତ ଚୌଧୁରୀ ଗୋଟେ ବ୍ୟାଙ୍କ୍ ? ବଦାନ୍ୟତାର ଗୋଟେ ସୀମା ଅଛି । କ'ଣ ନ କରିଛି ମୁଁ ତମ ପାଇଁ ? ବର୍ତ୍ତମାନରେ ତମେ ମୋତେ ଦେଇଛ କ'ଣ ?

ସଞ୍ଜୟ—ବଦାନ୍ୟତା ମୁଁ ଚାହୁଁନ । ଚାହୁଁଛି ମୋର ପ୍ରାପ୍ୟ, ମୋର ପାରିଶ୍ରମିକ ।

ସୁରଜିତ—ପାରିଶ୍ରମିକ ? କ'ଣ ତମେ କରିଛ ? ଦୀର୍ଘ ଛମାସ ଧରି ଲେଖିବ ଲେଖିବ ବୋଲି ମତେ ଫାଙ୍କି ମାରିଆସିଛ । ମୋର କାଗଜରେ ମୋର ବିରୁଦ୍ଧରେ ଲେଖିଛ । ମୋର ଘରେ କରିଛ ଲେବର୍ ଇଉନିୟନର ହେଡ୍ ଅଫିସ୍, କେତେଗୁଡ଼ାଏ ଲୋଫର୍, ଭାଗାବଣ୍ଡ ଷ୍ଟ୍ରେଟଲୋକଙ୍କୁ ନେଇ । ତା'ପରେ ବି ତମେ ମୋର ଘରେ, ମୋର ଆଗରେ ଠିଆହୋଇ ଅଭିଯୋଗ କରୁଛ ! I congratulate you.

[ ଚାଲିଯାଇଛି ଭିତରକୁ ସୁରଜିତ୍ । କିଛିକ୍ଷଣ ପୂର୍ବରୁ ଶିଖା ବାହାର ପଟରୁ ଠିଆ ହୋଇ ଶୁଣିଛି ଏମାନଙ୍କ କଥାବାର୍ତ୍ତା । ]

ଶିଖା—(ପ୍ରବେଶ କରି) ତମେ ଭାରି ପଡୁଛ, ସଞ୍ଜୟ !

ସଞ୍ଜୟ—କଟା ଘା'ରେ ଚୂନ ଛିଟା ଦେବାକୁ ଆସିଲ ?

ଶିଖା—ତମେ ପରା ଜଣେ କବି, ଲେଖକ ! କିନ୍ତୁ ତମକୁ ଦେଖିଲେ ତ ସେମିତି ମନେହେଉନ । ବୋକା···ନିହାତି ବୋକା ତମେ !

ସଞ୍ଜୟ—ଶିଖା !

ଶିଖା—ତମକୁ ଦେଖିଲେ ମୋର ଦୟା ହୁଏ, ସଞ୍ଜୟ ! ଗୋଟାଏ ସକାଳର ଅନ୍ଧ କୁହୁଡ଼ି ତମକୁ ବାଟ ଭୁଲାଇ କେତେ ଅବାଟକୁ ନେଇଆସିଲା, ଅଥଚ ତମେ ଜାଣିପାରିଲ ନାହିଁ, ବୁଝିପାରିଲ ନାହିଁ, ବାଧା ଦେଇପାରିଲ ନାହିଁ ! ଝଣ୍ଟି ଅଭୁତର ଚକାଭଉଁରୀରେ ଶୁଖିଲା ପତ୍ର ହୋଇ ଉଡ଼ିଆସିଲ ତମେ !

ସଞ୍ଜୟ—ଆଶା, ଅକାଂକ୍ଷା, ଅଭିଳାଷର ଶୂନ୍ୟ ଅଞ୍ଚଳ ନେଇ ଏଇ ନଗରରେ ମୁଁ ପାଦ ଦେଇଥିଲି । ବଡ କଥା, ବଡ ସ୍ୱପ୍ନ, ବଡଲୋକ, ବଡ଼ମନ···ଏଇଥିରେ ଭରିଥାନ୍ତା ମୋର ଶୂନ୍ୟତା । ଏଥର ମୁଁ ଫେରିବାକୁ ଚାହେଁ । କିଏ ବାଟ ଦେଖେଇଦେବନି ?

ଶିଖା—ବାଟ ?

ସଞ୍ଜୟ—ହଁ, ବାଟ ଭୁଲିଯାଇଛି ମୁଁ । କିଏ ହାତ ଧରି ଆଗେଇନେବନି ?

ଶିଖା—ତମକୁ ହାତ ଧରି ଆଗେଇନେବାର ଗୌରବ ମୋର କାହିଁ ସଞ୍ଜୟ ? ସଭ୍ୟତାର ଶ୍ରେଷ୍ଠ ଶିଖାଟିଏ ; କେତେ ନା ତା'ର ଆଲୁଅ, ସେ ତମକୁ ପୁଣି ବାଟ ଦେଖେଇବ ?

ସଞ୍ଜୟ—ରୋଶନି ମୁଁ ଖୋଜୁନି । ଜଉଳୁସ୍ ମୁଁ ଚାହେଁନି । ଶ୍ରେଷ୍ଠ ସଭ୍ୟତାଟି, ସେଇ ମୋ ପାଇଁ ଥିର——ତା'ର ଶ୍ରେଷ୍ଠ ଶିଖାଟିଏ ହେବ ମୋ ଚାଲିବାଟର ମଶାଲ୍··· ଉଆଁସର ରୋଶନି ।

ଶିଖା—ଦମକା ପବନରେ ସେ ଯଦି ଲିଭିଯାଏ ?

ସଞ୍ଜୟ—ମୁଁ ତାକୁ ହାତପାପୁଲିରେ ଘୋଡ଼େଇରଖିବି ଶିଖା, ଝଡ଼ଝଞ୍ଜାରୁ ବଞ୍ଚେଇ ରଖିବି ।

ଶିଖା—ଶେଷରେ ଯଦି ସରିଯାଏ ?

ସଞ୍ଜୟ—ତା ଆଗରୁ ସ୍ୱାଦ ପାଇସାରିବି, ଶିଖା !

ଶିଖା—ମୋ ଉପରେ ଏତେ ଭରସା ରଖ ନାହିଁ, ସଞ୍ଜୟ ! ମୁଁ ବି ଏଇ ସମାଜର ଜଣେ । ସମସ୍ତଙ୍କ ପରି ମୁଁ ବି ତମକୁ ଉପହାସ କରିଛି ।

ସଞ୍ଜୟ—ସେଇ ଉପହାସ ମୋର ଆଖି ଖୋଲିଦେଇଛି, ଶିଖା ! ମୁଁ ବଞ୍ଚିବାକୁ ଚାହେଁ । ମୁଁ ମୁକ୍ତି ଚାହେଁ ।

ଶିଖା—ହଁ, ସଞ୍ଜୟ, ତମେ ବଞ୍ଚିବ । ସଭ୍ୟତାର ଅଳକାପୁରୀ ଯାହା ପାରିନି, ତା'ପାଇଁ ସେଇ ନୂଆଁ ଶିଆ ଭଙ୍ଗା ଚାଲ ।

ସଞ୍ଜୟ—ଶିଖା ! ଏଠି ହୃଦୟ ନାହିଁ, ପ୍ରାଣ ନାହିଁ, କିଛି ନାହିଁ; ଖାଲି ମିଛ, formality.

ଶିଖା—ତମେ ଚାଲିଯାଅ, ସଞ୍ଜୟ, ଏ ମିଛ ସ୍ୱର୍ଗରୁ ତମେ ଚାଲିଯାଅ ।

ସଞ୍ଜୟ—ହଁ, ଚାଲିଯିବ । ହେଲେ ସେ ପତିତ ମାଟିରେ ମୋ ପାଇଁ କ'ଣ ଥିବ ? କିଏ ଥିବେ ?

ଶିଖା—ଆବ୍‌ବାଜାନ୍, ଅମୀନା ।

ସଞ୍ଜୟ—ନା, ପାରିବନି ମୁଁ । ଯାହା ପାଇଁ ସାମାନ୍ୟ କେଇଟା ଟଙ୍କା ଯୋଗାଡ଼ କରିପାରିଲି ନାହିଁ, କେମିତି ତାକୁ···

ଶିଖା—ଟଙ୍କା ମୁଁ ଦେବି ।

ସଞ୍ଜୟ—ନା, ମୁଁ ନେବିନି ।

ଶିଖା—ସଞ୍ଜୟ, ଆବ୍‌ବାଜାନ୍ ସିଏ ଯଦି, ସେ ରକ୍ତ ଟିକେ ନ ପାଇ ମରିଯିବ । ତା ପାଇଁ ତମେ ଏତିକି କରିପାରିବନି, ଯିଏ ତମକୁ ମଣିଷ କରିଚି, ଆଶ୍ରୟ ଦେଇଛି··· !

ସଞ୍ଜୟ—ବନ୍ଦ କର, କିଛି ଜାଣିନ, ତମେ କିଛି ଜାଣିନ ! ମାଟିଆବ୍ରୁଜର ମାଟି ଯେତେବେଳେ ଲାଲ୍ ହୋଇଉଠୁଥିଲା ମଣିଷର ତାଜା ରକ୍ତରେ, ଭାଇ ଭାଇର ଶବ ଉପରେ, ସାମ୍ପ୍ରଦାୟିକ ଦଙ୍ଗାରେ, ସେତିକିବେଳେ···ସେଇ ଖୁନ୍, ଦଙ୍ଗା, ଲୁଟତରାଜର ହିଂସ୍ର ବହ୍ନିଶିଖା ଭିତରୁ ଯେଉଁ ମୁସଲ୍‌ମାନ୍ ଗୋଟିଏ ଅସହାୟ କାଫେର୍ ଶିଶୁକୁ ଉଦ୍ଧାର କରିନେଇ ଆସିଥିଲା, ସେଇ ହେଉଚି ଆବ୍‌ବାଜାନ୍ !

ଶିଖା—ସଞ୍ଜୟ !

ସଞ୍ଜୟ—ଅଉ ଆଜିର ଏଇ ସଞ୍ଜୟ ହେଲା ସେଦିନର ସେଇ ଅସହାୟ ଶିଶୁ ।

ଶିଖା—ସଞ୍ଜୟ ! !

ସଞ୍ଜୟ—ସେଇଦିନୁ ମୋତେ ମଣିଷ କରିଚି ଏଇ ଆବ୍‌ବାଜାନ୍ ।

ଶିଖା—ଆଜି ସେଇ ଆବ୍‌ବାଜାନ୍, ଯିଏ ତୁମ ପାଇଁ ଏତେ କରିଚି, ତା'ପାଇଁ ତୁମେ ମୋଠୁଁ ଟଙ୍କା କେଇଟା ନେଇପାରିବନି, ସଞ୍ଜୟ ?

ସଞ୍ଜୟ—ଶିଖା !

ଶିଖା—ଆସ, ଆଉ ଡେରି କରନା, ଆସ !

[ ଶିଖା ଚାଲିଗଲା ବାହାରକୁ, ପଶିଆସିଛୁ ଅଗଣି ]

ଅଗଣି—ବାବୁ !

ସଞ୍ଜୟ—କିଏ, ଅଗଣି !

ଅଗଣି—ବାବୁ, ତମର ଟଙ୍କା ଦରକାର ଥିଲା ନା ?

ସଞ୍ଜୟ—କାହିଁକି ?

ଅଗଣି—ଏତକ ଟଙ୍କା ହେଲେ ତୁମର ଚଳିବନି, ବାବୁ ?

[ଅଗଣି ସବୁତକ ଟଙ୍କା ସଞ୍ଜୟର ଗୋଡ଼ପାଖେ ଅଜାଡ଼ିଦେଇଛୁ ]

ସଞ୍ଜୟ—ଅଗଣି !

ଅଗଣି—ନା ବାବୁ, ଟ୍ରେସ କରନା, ଡକେଇତି କରନି, ହକ୍ କମେଇଲା ଟଙ୍କା । ମୋର ଆଉ କିଏ ଅଛୁ, ବାବୁ ?

ସଞ୍ଜୟ—ଅଗଣି ! ଯୋଉ ଘରର ମାଲିକ ମୋତେ ଖାଲି ହାତରେ ଫେରେଇ-ଦେଲା, ସେଇ ଘରର ଚାକର ମୋତେ ଥାଳି ଅଜାଡ଼ିଦେଉଛୁ ! ନେବା ନାହିଁ ? ନିଶ୍ଚୟ ନେବ । ହେଲେ, ଆଜି ନୁହେଁ । ଏଣିକି ଯୋଉଦିନ ମୋର ଦରକାର ହେବ ମୁଁ ନିଜେ ତୋଠୁ ହାତ ପତେଇ ମାଗି ନେଇଯିବି ।

ଅଗଣି—ବାବୁ !

ସଞ୍ଜୟ—ଆଉ ବାବୁ ବୋଲି ଡାକନି । ତୁ ମୋ ଆଖିରେ ଏ ଘରର ଚାକର ନୁହ, ମୋର ଖୁନ୍ ନଜର, ନିଜ ରକ୍ତର କେହି ଜଣେ ।

ଅଗଣି—ବାବୁ ! ତମେ ଯାଅ, ବାବୁ ! ଆଉ ଡେରି କରନା, ଯାଅ ।

ସଞ୍ଜୟ—ଅଗଣି !

[ ସଞ୍ଜୟ ଚାଲିଗଲା ବାହାରକୁ । ସୁରଜିତ୍ ଆସିଛି ]

ସୁରଜିତ୍—କ'ଣ କରୁଥିଲୁ ?

ଅଗଣି—କିଛି ନାହିଁ,ବାବୁ !

ସୁରଜିତ୍—ମିଛ କହୁଛୁ । ଏ ଟଙ୍କା ସବୁ କାହାକୁ ଦିଆହେଉଥିଲା ?

ଅଗଣି—ମୋ ଇଚ୍ଛା, ମୁଁ ଯାହାକୁ ଦେଲି । ଗୃହ କର ତ ଦେଇନ !

ସୁରଜିତ୍—ଆଚ୍ଛା, ତୋ ଇଚ୍ଛା ! ଭଲ ମାହାତ୍ମ ହୋଇଗଲୁଣି ! ( ମାରିଲା ଚଟକଣା ) ନିମକ୍‌ହାରାମ୍ , ଯା, ବାହାରିଯା ଏଠୁ !

ଅଗଣି—ମତେ ମାରିଲ ? ନିଅ, ବାବୁ ! ମୁଁ ଏଠୁ ଚାଲିଯାଉଛି । ଏ ଘରର ଲୁଣ ମୁଁ ଖାଇଛି । ତମକୁ ତ ଅଭିଶାପ ଦେଇପାରିବି ନାହିଁ । ଠାକୁରେ ତୁମର ମଙ୍ଗଳ କରନ୍ତୁ ।

[ ଅଗଣି ଚାଲିଯାଇଛି ବାହାରକୁ । ]

ସୁରଜିତ୍—[ ଧୀରେ ଧୀରେ ଗମ୍ଭୀର ଭାବରେ ପଦଚାରଣା କରୁଛି । ଝଡ଼ର ପକ୍ଷୀ ପରି ପଶିଆସିଛି ଅମୀନା, ବାହାରୁ ଘର ଭିତରକୁ ] ।

ଅମୀନା—ବାବୁଜୀ ! ଚାଲ, ବାବୁଜୀ ! ଆବ୍‌ବାଜାନ୍‌ର ତବିୟତ୍ ବହୁତ ଖରାପ୍‌ ବାବୁଜୀ ! ଏ ଗୋସା ହେବାର ଓକ୍ତ ନୁହେଁ, ବାବୁଜୀ ! ସେ ମରିଯିବ । ଖାଲି ତମକୁ ଥରେ ଦେଖିଲେ ସେ ଶାନ୍ତିରେ ମରିପାରିବ । ତମକୁ ଦେଖି ସେ ଭାଇଜାନ୍‌କୁ ଭୁଲିଛି । ଆଜି ତମେ ଯାଇ ଠିଆ ନ ହେଲେ··· । ମୁଁ ଏଠି ରହିବା ପାଇଁ ଆସିନି, ଟଙ୍କା ପଇସା ପାଇଁ ଆସିନି । ତମେ ଥରେ ଚାଲ, ମୁଁ ତମକୁ ଅଟକେଇବିନି । ମୁଁ ତମ ଫେରିବା ବାଟ ରୋକିବିନି । ସେଇ କୁଲ୍‌ବସ୍ତି, ସେଇ ଭଙ୍ଗା ଚାଳ, ସେଇ ସିଲେଇ ମେସିନ୍, ସେଇ ଅଭାବ ଅସୁବିଧା···ତା ଭିତରକୁ ମୁଁ ତମକୁ ଟାଣିବିନି, ବାବୁଜୀ ! ତମେ ଲେଖିବ, ତମେ ବଡ଼ ହେବ ; ଏଠି ରହିବା ତମର ଦରକାର । ତମ ରାସ୍ତାରେ ମୁଁ କାହିଁକି କଣ୍ଟା ହେବି ? ତମେ ଚାଲ, ବାବୁଜୀ ! ନ ହେଲେ ଆବ୍‌ବାଜାନ୍ ମରିଯିବ ।

ସୁରଜିତ୍—ତମେ ବି ତା' ହେଲେ ଅମୀନା ?

ଅମୀନା—ବାବୁଜୀ କାହିଁ ?

ସୁରଜିତ୍—ବାବୁଜୀ ? ସେ ଏଠି ନାହିଁ ।

ଅମୀନା—ଅଛୁ, ଅଲବତ୍ ଅଛୁ । କୁହ, କୁହ ସେ କେଉଁଠି ? ତମେ···ତମେ ···ାଞ୍ଚ ଲୁଚାଇ ରଖିଚ ।

ସୁରଜିତ୍—ହଁ, ରଖିଚ ! ଇଚ୍ଛା ହେଲେ ତମକୁ ବ ସେମିତ ··

ଅମୀନା—ମୋତେ··· ?

ସୁରଜିତ୍—ହଁ, ତମକୁ ! ତମେ, ତମେଇ ତ ଏ ସବୁର ମୂଳରେ । ଏଇ ବିପ୍ଳବ, ଏଇ ଆନ୍ଦୋଳନ, ଏ ଧର୍ମଘଟ, ଏଇ ବହ୍ନିଶିଖା, ସବୁର ମୂଳରେ ତମେ । ତମକୁ ମୁଁ ଯିବାକୁ ଦେବନି ।

ଅମୀନା—ଯିବାକୁ ଦେବନି ?

ସୁରଜିତ୍—ନା ! ସନ୍ତୋଷ ଯେମିତ ଏଠି ବନ୍ଦୀ ରହିଚ, ତମେ ବି ଠିକ୍ ସେମିତ ରହିବ । ମୁହଁ ଖୋଲିପାରିବ ନାହିଁ । ଚିତ୍କାର କରିପାରିବ ନାହିଁ । ମୁଁ ଯେମିତ ହସେଇବ, ତମେ ସେମିତ ହସିବ । ହାଃ···ହାଃ···

ଅମୀନା—ନା, ନା, ବାବୁଜୀ ! ବାବୁଜୀ ! ( ଭୟରେ ଚିତ୍କାର କରିଉଠିଛୁ । ଚିତ୍କାର କରିଉଠି ଦଉଡ଼ି ପଳେଇଛୁ ବାହାରକୁ )

ସୁରଜିତ୍—ଅମୀନା···ଅମୀନା···ଅମୀନା !

—ଅନ୍ଧାର—



# ପଞ୍ଚମ ଦୃଶ୍ୟ

[ ସଞ୍ଜୟଙ୍କର କକ୍ଷ । ଗୃହଅନ୍ତେ ଅନ୍ଧାର । ଅନ୍ଧାର ଭିତରେ ଛିଡା ହୋଇଛନ୍ତି ସଞ୍ଜୟ ଗୋଟାଏ କଳା ପ୍ରସ୍ତରମୂର୍ତ୍ତି ଭଳି । ବାଲ୍‌କୋନି ଦେଇ ବାହାରୁ ଯେଉଁ ତାରାର ଆଲୋକ ଆସୁଛି, ସେଇଥିରେ ସେ ବାରିହେଉଛନ୍ତି । ଘଣ୍ଟାର ଟିକ୍ ଟିକ୍ ଶବ୍ଦ । ବାରଟା ବାଜିବାର ଶବ୍ଦ । ବାହାରୁ ଆସିଛି ଶିଖା । ]

ଶିଖା— (ସୁଇଚ୍ ଟିପି ଆଲୋକ ଜାଳିଲା ) ରାତି ବାରଟା । ତମେ ଏଠି ? କ'ଣ କରୁଛ କହୁନ ସେ ! ଗୃହଯିବ ବୋଲି ବାହାରିଚ ?

ସଞ୍ଜୟ—ଶିଖା !

ଶିଖା—ଲୁଚି ଲୁଚି ଏମିତି ଚୋରର ପରି ପଳେଇଯିବ ? ଛିଃ, ଏତେ କାପୁରୁଷ ? କାହିଁକି ? କରୁଣାଇଙ୍କ ମୁହାଁମୁହିଁ କହି ତମେ ଯାଇପାର ନା ?

ସଞ୍ଜୟ—ଶିଖା !

ଶିଖା—ନିଜକୁ ଏତେ ଛୋଟ କରିଦିଅନା, ସଞ୍ଜୟ ! ଯେମିତି ଭାବରେ ଆସିଥିଲ, ଠିକ୍ ସେମିତି ଭାବରେ ଯିବାକୁ ଚେଷ୍ଟାକର···ମଣିଷ ପରି, ପୁରୁଷ ପରି । ମିଛ inferiority complex ଭିତରେ ନିଜର ସ୍ୱାଧୀନ ମନକୁ ତିଳ ତିଳ କରି ହତ୍ୟା କର ନାହିଁ ।

ସଞ୍ଜୟ—ମୁଁ ହାରିଯାଇଚି, ଶିଖା !

ଶିଖା—ନା, ତମେ ଜିତିଚ ।

ସଞ୍ଜୟ—ଶିଖା !!

ଶିଖା—ତମେ ଲେଖିପାରନା ; ଶଦ୍ଧା ଆଦର୍ଶ ଭିତରେ ନଜକୁ ବଳି ଦେଇପାରନା । ଜତୁଭାଇଙ୍କର ଖିଆଲ ବରୁଦ୍ଧରେ ଏଇଟାଇ ହେଉଛି ତୁମର ଜବାବ । ତୁମେ ଯାଅ ସନ୍ତୋଷ୍କ,ଜତୁଭାଇଙ୍କୁ କହିଆସ ।

( ସୁରଜିତ୍ ପ୍ରବେଶ କରଣ )

ସୁରଜିତ୍—Wonderful !

ଶିଖା—ଜତୁଭାଇ !

ସୁରଜିତ୍—ତୁ ସନ୍ତୋଷ୍କୁ ଏଠୁ ଚାଲିଯିବାପାଇଁ କହୁଚୁ ?

ଶିଖା—ହିଁ, ଖାଲି ସେତକ ନୁହେଁ, କହୁଚ ଘେରଙ୍କ ପଣ ନ ଯିବାକୁ ।

ସୁରଜିତ୍—ତୁ ଚାହୁ ସେ ଏଠୁ ଚାଲିଯାଉ ?

ଶିଖା—ହିଁ, ମୁଁ ଚାହେଁ । ଯାଅ ସନ୍ତୋଷ, ପୋଷାକଟା ବଦଳେଇଥାଅ । ଅରେ, ଯାଅନା ।

ସୁରଜିତ୍—କାହିଁକ ?

ଶିଖା—କାରଣ ସେ ଏଠି ଶ୍ୱାସରୁଦ୍ଧ ହୋଇପଡ଼ୁଚ । ଚୌଧୁରୀ ବଙ୍ଗଳେର ଆକାଶ ତା ପାଇଁ ଖୁବ୍ ଛୋଟ, ଖୁବ୍ ସଙ୍କୀର୍ଣ୍ଣ ।

ସୁରଜିତ୍—ତା' ହେଲେ କ'ଣ ସେ କୁଲିବସ୍ତିର ଆକାଶଟା ତା' ପାଇଁ ପ୍ରଶସ୍ତ ?

ଶିଖା—ସେ ବରଂ ଭଲ ; ହେଲେ ଏ ଆତ୍ମପ୍ରବଞ୍ଚନା ଭିତରେ ତିଳ ତିଳ ମରିବାକୁ ମୁଁ ତାକୁ ଦେବନ ।

ସୁରଜିତ୍—ଯୋଉଦନ କୁଲିବସ୍ତିର ଦାରିଦ୍ର୍ୟ, ଅନଟନ ଭିତରେ ସେ ଅଧିଷ୍ଟ ହୋଇପଡ଼ିଥିଲା, କୋଉଠି ଥିଲ ସେଦନ ତୁମେମାନେ, ଆଜ ଆସିଚ ତା'ର ଶୁଭାକାଙ୍କ୍ଷୀ ହୋଇ ? ମୁଁ ତୁମ ହାତରେ ତା'ର ଭବିଷ୍ୟତ ଟେକିଦେଇପାରିବ ନାହିଁ । ତା' ଉପରେ ମୋର ଅନେକ ଆଶା, ଅନେକ ଭରସା । ତୁ ବୁଝିପାରିବୁନ ଶିଖା, ସନ୍ତୋଷ୍କୁ ନେଇ ମୁଁ ଯେ କି ସ୍ୱପ୍ନ ଦେଖିଚ, ତା' ତୁ ବୁଝିପାରିବୁନ ।

ଶିଖା—ଦୁନିଆରେ ଆଉ କେହି ନ ବୁଝୁ, ଜିତୁଭାଇ, ସନ୍ତୋଷଙ୍କୁ ନେଇ ତୁମର ଯେଉଁ ସ୍ୱପ୍ନ, ତା ମୁଁ ବୁଝିଛି । ଏଇ ଦେଶର ଗଳିକନ୍ଦିରେ କେତେ ପ୍ରତିଭା ଏମିତି ଅଜଣାରେ ଝଡ଼ିଯାଉଛନ୍ତି । କାହାରି ଖବର ତ ତୁମେ ରଖିନା । ଅଥଚ କୁଲିବସ୍ତିର ଗୋଟାଏ ମାମୁଲି ଲେଖକ ଏଇ ସନ୍ତୋଷ, ତା'ପ୍ରତି କାହିଁକି ତୁମର ଏ ଦୁର୍ବଳତା ? କାହିଁକି ଏ ଦରଦ ? କାହିଁକି ଏ ସହାନୁଭୂତି ?

ସୁରଜିତ୍—ଶିଖା !

ଶିଖା—ଯୋଉଦିନ ସନ୍ତୋଷର କୁଲିବସ୍ତିର କବିତା ଆତ୍ମପ୍ରକାଶ କଲା, ସେଦିନ ତୁମେ ଠିକ୍ ବୁଝିପାରିଥିଲ, ସେ ଏକ ଶସ୍ତା ସାହିତ୍ୟ ନୁହେଁ, ମନେଭୁଲାଣିଆ କାହାଣୀ ନୁହେଁ । ସେଥିରେ ଅଛି ସଂଗ୍ରାମର ଡାକ, ବିପ୍ଳବର ଆହ୍ୱାନ । ସେଥିରେ ଅଛି ସମାଜର ଅନ୍ୟାୟ ଅତ୍ୟାଚାର ଅବିଚାର ବିରୁଦ୍ଧରେ ଏକ ସୁଦୃଢ଼ ପ୍ରତିବାଦ ।

ସୁରଜିତ୍—ଶିଖା !!

ଶିଖା—ତୁମେ ଠିକ୍ ବୁଝିପାରିଥିଲ, ସେଇ ଲେଖା ତୁମ ମୁଖାଟାକୁ ଛିନ୍ ଛିନ୍ କରି ଫିଙ୍ଗିଦେଇ ଦୁନିଆ ଆଗରେ ଦେଖାଇଦେବ ତୁମେମାନେ ପ୍ରକୃତରେ କ'ଣ !

ସୁରଜିତ୍—ବନ୍ଦ କର, ଶିଖା !

ଶିଖା—ସେଇଥିପାଇଁ ତୁମେ ଚାହିଁଥିଲ, ସେ ପ୍ରତିଭା ଅଙ୍କୁର ଶୁଖି ଝରି ମଉଳିଯାଉ । ଆଉ ସେଇଥିପାଇଁ ତୁମେ ସନ୍ତୋଷକୁ ଟାଣିଆଣିଥିଲ ଏଇ ଚୌଧୁରୀ ବଙ୍ଗଳୋକୁ । ଶ୍ରେଷ୍ଠ ଅଙ୍କୁରଟି ମାଟି ଫଟେଇ ସୂର୍ଯ୍ୟାଲୋକ ସନ୍ଧାନରେ ଉପରକୁ ମଥା ଟେକିଛି । ତାକୁ ତୁମେ ଚାହିଁଥିଲ ଡ୍ରଇଂରୁମ୍‌ର artificial ଆଲୋକରେ ନିଃଶେଷ କରିଦବାକୁ ।

ସୁରଜିତ୍—ଚୁପ୍‌କର, ଶିଖା !

ଶିଖା—ନା, ଭୟ କରନି ଜିତୁଭାଇ ! ତୁମକୁ ମୁଁ ବାହାରେ expose କରିବିନି । ମୁଁ କେବଳ ସନ୍ତୋଷର ମୁକ୍ତି ଚାହେଁ ।

ସୁରଜିତ୍—ନା, ଏତେ ସହଜରେ ମୁକ୍ତି ତାକୁ ମୁଁ ଦେବିନି ।

ଶିଖା—ମୁଁ କିନ୍ତୁ ତାକୁ ନେଇଯିବି ।

ସୁରଜିତ୍—ଅସମ୍ଭବ, ଶିଖା ! ତୁ ପୁଣି ଆଜି ମୋ ବିରୁଦ୍ଧରେ ଠିଆ ହେବାକୁ ଚାହୁଁଛୁ ?

ଶିଖା—ତୁମ ବିରୁଦ୍ଧରେ ଠିଆ ହୋଇ ମୋର ଲାଭ କ'ଣ, ଜେଠୁଭାଇ ?

ସୁରଜିତ୍—ତା'ହେଲେ ସଞ୍ଜୟ ପାଇଁ କାହିଁକି ତୋର ଏତେ ଦରଦ ?

ଶିଖା—ଶିଳ୍ପ, କଳା, ସାହିତ୍ୟ ପାଇଁ ତୁମେ ପ୍ରଚୁର ଦାନ କର, ଶୁଣିଛି । ହେଲେ ମୁଁ କହିବି, ଶିଳ୍ପ କ'ଣ ତୁମେ ବୁଝନା । କଳାକାର କ'ଣ ତୁମେ ଜାଣନା । ଟଙ୍କା ଯେ କେହି ରୋଜଗାର କରିପାରେ । କିନ୍ତୁ ପ୍ରତିଭା କେହି ଅର୍ଜନ କରିପାରେନା । ଜାଣିଶୁଣି ତୁମେ ସଞ୍ଜୟ ଭଳି ଗୋଟେ ପ୍ରତିଭାକୁ ପଙ୍ଗୁ କରିଦେବାକୁ ଚାହଁ । ଏତେଟା ନିଷ୍ଠୁର ହୁଅନ, ଜେଠୁଭାଇ ' ସଞ୍ଜୟକୁ ମୁକ୍ତି ଦିଅ ।

ସୁରଜିତ୍—ମୁକ୍ତି ମୁଁ ତାକୁ ଦେଇପାରେନା । ଜଣେ ଶିଳ୍ପୀ ପାଇଁ ଯାହା କିଛି ଦରକାର, ମୁଁ ତାକୁ ଦେଇଥିଲି । ଆଉ କ'ଣ ତା'ର ଦରକାର ?

( ସଞ୍ଜୟ ବେଶ ବଦଳାଇ ଆସିଛି ଭିତରୁ )

ସଞ୍ଜୟ—ଯାହା ଦରକାର, ତାହା ଦେଇପାରିବେନି, ସୁରଜିତ୍‌ବାବୁ !

ସୁରଜିତ୍—କ'ଣ ତୁମେ ଚାହଁ ସଞ୍ଜୟ ?

ସଞ୍ଜୟ—ମୁଁ ଚାହେଁ ଏଇ ଚୌଧୁରୀ ବଙ୍ଗଳାର ବାହାରେ ମୁଠାଏ ଆକାଶ, ଝଲକାଏ ସୂର୍ଯ୍ୟାଲୋକ, ଦମକାଏ ମୁକ୍ତ ପବନ । କୁହନ୍ତୁ, ଦେଇପାରିବେ ଏ ସବୁ ? ନା, ମୁଁ ଜାଣେ, ଆପଣ ପାରିବେନି । ସେଇଥିପାଇଁ ମୁଁ ଚାଲିଯାଉଚି । କ୍ଷମା କରିବେ । ଆପଣଙ୍କର ପ୍ରତିଶ୍ରୁତି ମୁଁ ପୂରଣ କରିପାରିଲିନି ।

( ଶିଖା ଓ ସଞ୍ଜୟ ବାହାରକୁ ଯିବାକୁ ଉଦ୍ୟତ ହେବା ସମୟରେ )

ସୁରଜିତ୍—ସଞ୍ଜୟ ସାଙ୍ଗରେ ତୁ ବି ଚାଲିଯାଉଚୁ, ଶିଖା ?

ଶିଖା—ହଁ, ଜେଠୁଭାଇ ' ମୁଁ ଜାଣେ, ତୁମେ ରାଗିବ । ତଥାପି ମୁଁ ନିରୁପାୟ ।

[ ଶିଖା ଓ ସଞ୍ଜୟ ବାହାରକୁ ଚାଲିଗଲେ । ସୁରଜିତ୍ ମୂକ ପରି ଛିଡ଼ା

ହୋଇଛୁ । ପି.ଏ. ବାହାରୁ ପଶିଆସିଲେ । Phone କ୍ରିଂ କ୍ରିଂ ବାଜୁଛୁ ! ସୁରଜିତ୍ ରସିଭର (receiver) ଉଠାଇ ଧରୁଛୁ । ]

ସୁରଜିତ୍—Yes···Choudhury speaking······କିଏ ? କିଏ···? ମ୍ୟାନେଜର ? କ'ଣ କହୁଲ ! Hallo ( ଫୋନ୍‌ଟା ରଖିଦେଇଛୁ )

ସୁରଜିତ୍—ମହେଶ୍, ମହେଶ୍ !

ପି.ଏ.—ସାର୍ !

ସୁରଜିତ୍—ଶୁଣିଚ ତୁମେ ?

ପି.ଏ.—ହଁ ସାର, ଶୁଣିଚ—

(1) Tribunal labourer ମାନଙ୍କ favourରେ decision ଦେଇଚ—

(2) Companyର partnerମାନେ factory lock up କରିଚନ୍ତି ;

(3) Govt. ତାର 44% share withdraw କରିନେଇଚ ;

(4) Income tax, 15 crore ଉପରେ ଗୋଟାଏ assessment caseରେ କିଢ଼ଯାଇଚ ।

ସୁରଜିତ୍—Stop. ତୁମେ ଜାଣିଲ କିପରି ?

ପି.ଏ.—ଆଉ ଶେଷ ଖବରଟା ହେଉଚ, ଆପଣ ଏ ବଙ୍ଗଳା ଛାଡ଼ି କୁଆଡ଼େ ଯାଇପାରିବେ ନାହିଁ ।

ସୁରଜିତ୍—ମହେଶ !

ପି.ଏ.—Yes, it is the stric tinstruction from the Central Intelligence Buero.

ସୁରଜିତ୍—ସେମାନେ ମୋର କଛୁ କରିପାରିବେନ···କଛୁ କରିପାରିବେନ । S. P. କାଲି ମୋତେ କଥା ଦେଇଚନ୍ତି ମହେଶ, ତୁମେ ଆସ ।

ପି.ଏ.—କିନ୍ତୁ ଆପଣଙ୍କ ଉପରେ କଡ଼ା ନଜର ରଖିବାକୁ S. P. ସାହେବ ମୋତେ ନିଜେ ଅର୍ଡ଼ର ଦେଇଛନ୍ତି ।

ସୁରଜିତ୍—What ? Devil, Brute, Ungrateful !

ପି.ଏ.—କ୍ଷମା କରିବେ, ଆଜ୍ଞା, ମୁଁ ungrateful ହୋଇପାରେନା । ମୁଁ ଖାଲି ମୋର କର୍ତ୍ତବ୍ୟ କରୁଛି ।

( Identity card ଦେଖାଇଛି । )

ସୁରଜିତ୍—ପରେଶ୍ ଦାସ···ଡ଼. ଏସ୍. ପି. ସେଣ୍ଟ୍ରାଲ ଇଣ୍ଟେଲିଜେନ୍ସ ତମେ ?

ପି.ଏ.—ଆଜ୍ଞା ହଁ, ମୁଁ ବାହାରେ ଅଛି । କିଛି ଅସୁବିଧା ହେଲେ ଖବର ଦେବେ ।

( ପ୍ରସ୍ଥାନ )

[ ସୁରଜିତ୍ ସୁଇସାଇଡ୍ କରିବାକୁ ଯାଉଛି—ଶିଖା ବାହାରୁ ପ୍ରବେଶ ]

ଶିଖା—ଜିତୁଭାଇ !

[ ଶିଖା ବନ୍ଧୁକ ମୁହଁଟାକୁ ଟାଣି ବଙ୍କାଇଦେଲା ତଳକୁ । ବନ୍ଧୁକ ଜୋର୍‌ରେ ଫୁଟିଉଠିଲା । କିଛି କ୍ଷଣ ସବୁ ସ୍ତବ୍ଧ ]

ସୁରଜିତ୍—ତୁ ଫେରିଆସିଚୁ ?

ଶିଖା—ତମେ କ'ଣ ଭାବିଥିଲ, ମୁଁ ସେହି କୁଳବନ୍ତିରେ ରହିଯାଆନ୍ତି ? ଏଇଟା ନାଟକ ଉପନ୍ୟାସର କାହାଣୀ ହୋଇଥିଲେ ଦର୍ଶକମାନେ ଦେଖିଥାନ୍ତେ, ନାୟିକା ଶିଖା ମନ୍ମଥର କବିପ୍ରତିଭାରେ ମୁଗ୍ଧ ହୋଇ ଚିରଦିନ ପାଇଁ ତା'ର କାବ୍ୟ-ନାୟିକା ହୋଇ କୁଳବନ୍ତିରେ ରହିଗଲା । କିନ୍ତୁ ଏ ତ କାହାଣୀ ନୁହେଁ । ଏଇଠି ଶିଖା ହାତରେ ଗୁଳି ହେଲେ ବି ତା କରିପାରେନା !

ସୁରଜିତ୍—ଶିଖା ! ! !

ଶିଖା—ଏଇ societyର କୋଉ ଝିଅ ତମ ପରି prospective candidateକୁ ଛାଡ଼ି ସନ୍ମଥ ପରି ବୋକା କବିକୁ prefer କରିବାକୁ ଆଗେଇଆସିବେ ?

ସୁରଜିତ୍—କିନ୍ତୁ ଆଜି ମୁଁ prospective candidate ନୁହେଁ, ଶିଖା, ଆଜି ମୁଁ ନିଃସ୍ୱ । ମୋର କିଛି ନାହିଁ । କୁଳବନ୍ତିର ସନ୍ତୋଷଠୁ ବି ମୁଁ ବହୁତ ଶ୍ରେଷ୍ଠ ହୋଇଯାଇଛି ।

ଶିଖା—କିନ୍ତୁ ଭାଇ ! !

ସୁରଜିତ—ହଁ ଶିଖା, ମୋର ମାନ, ଇଜ୍ଜତ, ଅଭିଜାତ୍ୟ bank balance ସବୁ ଧୂଳିରେ ମିଶିଛି । ଜମିଦାର ଧନଞ୍ଜୟ ଚୌଧୁରୀର ପୁଅ ସୁରଜିତ୍ ଚୌଧୁରୀ କାଲି ସକାଳେ ଦାଣ୍ଡର ଭିକାରି ହୋଇ ଏ ଘରୁ ବାହାରିଯିବ । ଘରପାଖରେ ପୋଲିସ । ଜନତା ଚିତ୍କାର କରି କହିବ, "ଦେଶଦ୍ରୋହୀ ଦୁର୍ନୀତିଗ୍ରସ୍ତ ସୁରଜିତ୍ ଚୌଧୁରୀକୁ ଫାଶୀ ଦେବା ଦରକାର । ତାକୁ ଗୁଳି କରିଦେବା ଉଚିତ ।" ମୁଁ imagine କରିପାରୁନାହିଁ ଶିଖା, ମୁଁ ଭାବିପାରୁନାହିଁ ।

ଶିଖା—କାହିଁକି ଭାବିବ ତମେ, ମୁଁ ପରା ତମ ପାଖରେ ଅଛି !

ସୁରଜିତ୍—ତୁ ? ନା, ନା, ତତେ ମୁଁ ରହିବାକୁ ଦେବିନି । ତୁ ଚାଲିଯା ଶିଖା; ମୋ ପାଖରେ ଆଜି କାହାର ରହିବା ଦରକାର ନାହିଁ । ମୋ ଜୀବନ ଗୋଟାଏ adventure, ଗୋଟାଏ gambling ; ଏକା ଆରମ୍ଭ କରିଥିଲି, ସେଇ ଏକାରେ ତା'ର ଶେଷ ହେଉ ।

ଶିଖା—କିନ୍ତୁ ମୁଁ ତ ତମକୁ ଏକା ଛାଡିପାରିବି ନାହିଁ ।

ସୁରଜିତ୍—କାହିଁକି, ଶିଖା ? ଅଗଣି ଛାଡି ଚାଲିଗଲା । ସନ୍ତୋଷ ଗଲା । ମହେଶ ମୋ ସାଙ୍ଗରେ ପ୍ରତାରଣା କଲା । ସମସ୍ତେ ଗଲେ । ଆଉ ତୁ କାହିଁକି···?

ଶିଖା—ଶିଖା ତ ତମର ଦରମାଖିଆ ଚାକର ନୁହେଁ ।

ସୁରଜିତ୍—ଶିଖା !

ଶିଖା—ତୁମର ସୁଖଦୁଃଖରେ ଚିରଦିନ ଭାଗୀ ହେବାର ଅଧିକାରରୁ ମତେ ବଞ୍ଚିତ କରନାହିଁ. ଜିତୁଭାଇ ! ତମର ଏଇ ଅନ୍ଧାର ଭିତରେ ମତେ ଶ୍ରେଷ୍ଠ ଶିଖାଟିଏ ହେଇ ଜଳିବାକୁ ଦିଅ । କୁହ ଜିତୁଭାଇ, ଦେବ କି ନା ?

ସୁରଜିତ୍—ଶିଖା !!

[ ନିବିଡ଼ ଆଲିଙ୍ଗନରେ ସୁରଜିତ୍ ଭିଡ଼ି ଧରିଲା ଶିଖାକୁ । ଆଜି ଜୀବନର ସବୁ ଝଡ଼, ଝଞ୍ଜା, ଅନ୍ଧାର ଭିତରେ ଏଇ ଯେମିତି ତାର ଏକମାତ୍ର ଆଶ୍ରୟ । ]

—ଯବନିକା ପତନ—

